# ସମୟ ଭୁଲ କରୁଚି ବ୍ୟାକରଣ

## ନକୁଳ ଚନ୍ଦ୍ର ସାହୁ



Source: Author, Digitized by PPRACHIN, SOA

କୃତଜ୍ଞତା :



ସଂପାଦକ ସମାବେଶ
ସଂପାଦକ ମହଲ
ଏବଂ
ସଂପାଦକ ଆମେମାନେ
ଙ୍କୁ

e: Author, Digitized by PPRACHIN, SOA

ନକୁଳ ଚଂଦ୍ର ସାହୁଙ୍କ ଟ୍ରାୟଲୋଜି

# ସମୟ ଭୁଲ କରୁଚି ବ୍ୟାକରଣ

ନକୁଳ ଚନ୍ଦ୍ର ସାହୁ



କାବ୍ୟଲୋକ

Source: Author, Digitized by PPRACHIN, SOA

# ସମୟ ଭୁଲ କରୁଚି ବ୍ୟାକରଣ

(ତିନୋଟି ପରୀକ୍ଷା ମୂଳକ ଉପନ୍ୟାସ)

ଲେଖକ : ନକୁଳ ଚଂଦ୍ର ସାହୁ
'ଶବ୍ଦ ଘର', ଗୋଡିସାହି
କଟକ-୭୫୪ ୦୦୬

© ଶ୍ରୀମତୀ ସୁଚିତ୍ରା ସାହୁ

ପ୍ରକାଶକ : କାବ୍ୟଲୋକ
: ୨/୨, ଟାଇପ୍- II ଆର
ୟୁନିଟ୍-୧, ଭୁବନେଶ୍ୱର-୯
: ନିଜିଗଡ କୁରୁଖୀ, ହରିରାଜପୁର
ଜଟଣୀ, ପୁରୀ - ୭୫୨ ୦୫୦

ପ୍ରଚ୍ଛଦ ଚିତ୍ର: ସରସ୍ୱତୀ, ଭୁବନେଶ୍ୱର

ଅକ୍ଷର ସଜ୍ଜା: ଅଙ୍କିତା ଗ୍ରାଫିକ୍ସ, ଭୁବନେଶ୍ୱର

ମୁଦ୍ରଣ : କଲ୍ୟାଣୀ, ବି.ଜେ.ବି. ନଗର, ଭୁବନେଶ୍ୱର-୧୪

ପ୍ରଥମ ପ୍ରକାଶ: ଶ୍ରୀପଞ୍ଚମୀ, ୨୦୦୬

ମୂଲ୍ୟ : ୫୫ଟଙ୍କା

---

**Samaya BHULA KARUCHI VYAKARAN**

( A Trilogy)

**By** : Nakul Chandra Sahoo
**Published by** : KAVYALOKA
**First Edition** : Shree Panchamee - 2006
**Price** : Rs. 55/-
© : Smt. Suchitra Sahoo

ISBN 81 - 89777-02-05

Source: Author, Digitized by PPRACHIN, SOA

# ସାହିତ୍ୟରେ ଟ୍ରାୟଲୋଜି

ମହାଯୁଦ୍ଧୋତ୍ତର ଅତ୍ୟାଧୁନିକ ଗଦ୍ୟ ସାହିତ୍ୟରେ ଟ୍ରାୟଲୋଜି ଏକ ପ୍ରକାର ପରୀକ୍ଷା ନିରୀକ୍ଷା- ମୂଳକ ସୁଠାମ ଶବ୍ଦ-ଶିଳ୍ପ । ଏହାର ଭାଷା ନିରୋଳା ଗଦ୍ୟ ନୁହେଁ, କିମ୍ବା ନୁହେଁ କାବ୍ୟିକ । ଗୀତି, ସଂଳାପ, ସ୍ୱଗତୋକ୍ତି, ବିଜ୍ଞାପନର ପଂକ୍ତି, ପହେଳି, ଢଗ, ପ୍ରଶ୍ନ, ଅର୍ଦ୍ଧବାକ୍ୟ ଓ ବିସ୍ମୟବାଚୀ ପ୍ରଭୃତି ଏହାର ବାକ୍ୟକୁ କରିଥାନ୍ତି ସମୃଦ୍ଧ । ଅଭିବ୍ୟକ୍ତିର ଡାଲୁକାରେ ଶବ୍ଦ-ଶିଳ୍ପୀ ପକ୍ଷୀଟିଏ ପରି ଯଥେଷ୍ଟ ସ୍ୱାଧୀନତାର ସହିତ ନିଜ ଅନୁଭୂତି ଓ ଅଧ୍ୟୟନର ଫ୍ରେମ୍ ଭିତରେ ସୃଷ୍ଟିର ଆକାଶରେ ଶିଳ୍ପଟିକୁ ସୁନ୍ଦର କରିବାକୁ ଉଡ଼ିଥାନ୍ତି । ପାଠକଙ୍କୁ ପ୍ରଲୁବ୍ଧ କରିବାକୁ ନିଜ ଇଚ୍ଛାନୁଯାୟୀ ଭାଷାର ଇନ୍ଦ୍ରଧନୁ ସଜାଡ଼ି ଶବ୍ଦର ବର୍ଷା କଳାର ଫ୍ରେମ୍ ଭିତରେ କରିଥାନ୍ତି । ଭାଷା ବ୍ୟାକରଣର ବନ୍ଧନ ମାନି ନଥାଏ । କିନ୍ତୁ କଳାର ନାନ୍ଦନିକ ନିୟମର କୂଳ କରି ନଥାଏ ଉଲଂଘନ ।

ଟ୍ରାୟଲୋଜି ଏପରି ଏକ ସୃଷ୍ଟି ଯାହା କେବଳ ପ୍ରବୀଣ ଶିଳ୍ପୀ ହିଁ ସୃଷ୍ଟି କରିପାରନ୍ତି । ଏହା ପିକାଶୋଙ୍କ ପ୍ରସିଦ୍ଧ ଛବି 'ଗୁର୍ଣ୍ଣିକା' ବା 'ଓ୍ୱାର୍ ଏଣ୍ଡ୍ ପିସ୍' ପରି ଦୋଦବୁଝା । କବିତାପରି ଏଥିରେ ସମସ୍ତ ପ୍ରକାର ବ୍ୟଞ୍ଜନା (ଆଂବିଗ୍ୟୁଟି) ଓ ସିମ୍ବଲ୍ ହୋଇଥାଏ ଦୃଷ୍ଟିଗୋଚର । ମିଥ୍, ଲୋକକଥା ଓ ମେଟାଫର୍‌ର ଆସ୍ତରଣରେ ପ୍ଲଟ୍ ହୋଇଥାଏ ଆଚ୍ଛାଦିତ । ଅଭିବ୍ୟକ୍ତିବାଦ (Experssionism) ଓ ପ୍ରଭାବବାଦ (Impressionism) ଦ୍ୱାରା ହୋଇଥାଏ ପ୍ରତିଷ୍ଠିତ । କିନ୍ତୁ ପ୍ରକୃତିବାଦ (Naturalism) ଓ ବାସ୍ତବବାଦର ସମ୍ମିଶ୍ରଣରେ ଆଧୁନିକବାଦରେ ଭର୍ତ୍ତିଥାଏ ଏହାର ଅନ୍ତଃ ମଂଜ ସ୍ରୋତ ।

ଓଡ଼ିଆ ସାହିତ୍ୟରେ ଟ୍ରାୟଲୋଜିର ଧାରା ପ୍ରାୟ ବିରଳ । ତେବେ ହରପ୍ରସାଦ ଦାସଙ୍କ 'ଲୁବ୍ଧକର ତିନି ପ୍ରହର' ଶୀର୍ଷକ ରଚନା Trilogy (ତ୍ରୟୀ) ଉପନ୍ୟାସ ଶିଳ୍ପର ଏକ ଭଲ ଉଦାହରଣ । ପ୍ରସିଦ୍ଧ ବଂଗୀୟ ଔପନ୍ୟାସିକ ସତ୍ୟଜିତ୍ ରାୟ ଗୋଟିଏ ଲୋକପ୍ରିୟ ସିନେମା କରିଛନ୍ତି ଯାହାର ଶୀର୍ଷକ 'Apu Trilogy' । ତିନୋଟି ସୃଷ୍ଟି, ଏକାପରି ବିଷୟ କିନ୍ତୁ ଚରିତ୍ର ବିଭିନ୍ନ । Rosella Stephen ଟ୍ରାୟଲୋଜିର ସଂଜ୍ଞା ତାଙ୍କ ପ୍ରବନ୍ଧରେ କରିଛନ୍ତି ନିର୍ଦ୍ଦେଶ : 'A trilogy is a set of three work of art that develop on a single theme' ।

ତିନୋଟି ଶାବ୍ଦିକ କଳାକୃତି ଗୋଟିଏ ବିଷୟ ଉପରେ କରିଥାଏ ଅଗ୍ରଗତି; ସେହି ସାହିତ୍ୟ ସୃଷ୍ଟିକୁ 'ଟ୍ରାୟଲୋଜି' ବୋଲି ଆଖ୍ୟା ଦିଆଯାଇଛି । ବିଖ୍ୟାତ ଔପନ୍ୟାସିକ ଜନ୍ ଡଶ୍ ପାଶ୍‌ସୋଙ୍କ ରହିଛି 'USA' ଶୀର୍ଷକ ବିଶ୍ୱପ୍ରସିଦ୍ଧ ଟ୍ରାୟଲୋଜି; ତ୍ରୟୀ ଉପନ୍ୟାସ । ଏହାର ପ୍ରଥମ ଖଣ୍ଡର ଶୀର୍ଷକ 'The 42nd Parallel' ଦ୍ୱିତୀୟଟି ହେଲା '1919', ୧୯୩୨



Source: Author, Digitized by PPRACHIN, SOA

ମସିହାରେ ପ୍ରକାଶିତ ଏବଂ ତୃତୀୟ ଖଣ୍ଡକର ଶୀର୍ଷକ 'The Big Money' ।

ରୋଜିଲା ଷ୍ଟିଫେନ୍ ଡଶ୍ ପାଶ୍ସୋଙ୍କ ରଚନା ଶୈଳୀ ବ୍ୟାଖ୍ୟାରେ ଦର୍ଶାଇଛନ୍ତି ତାଙ୍କ ବ୍ୟବହୃତ ଟେକ୍‌ନିକ : The USA Trilogy also came to be known as newsreels (impressionistic collections of slogans, popular song lyrics, newspaper headlines and extracts from political speeches). Within 1240 pages....' । ସାହିତ୍ୟ ଅପେକ୍ଷା ଅଧିକ ସମାଜବିଜ୍ଞାନୀର ଅଧ୍ୟୟନରେ ପୂରିଛି । ପ୍ରଥମ ଦୁଇଖଣ୍ଡରେ ଉତ୍କୀର୍ଣ୍ଣ ହୋଇନାହିଁ ସମାପ୍ତି । ଶୈଳୀ (Style) ର ଧାରାବାହିକତାରେ ଟ୍ରାୟଲୋଜିର ଶେଷ କିସ୍ତି ଯୁକ୍ତିଗତ ଅଗ୍ରଗତି ଲାଭ କରିଛି ଏବଂ ତିନୋଟି ଯାକ ଏକତ୍ର ପଠନର ଶୃଙ୍ଖଳା ଆଣିଛି । ଅନ୍ତର୍ପନ୍ଥା (intersect)ରେ ବର୍ଣ୍ଣନା ସାହିତ୍ୟିକ କୌଶଳର ଘଟାଇଛି ଉନ୍ନତି ।

ଗୋଟିଏ ରଚନାର ସିରିଜ୍ ଯେଉଁଠି ହୁଏ ସ୍ଥିର, ସେହି ସିରିଜ୍‌କୁ ଟ୍ରାୟଲୋଜି ବୋଲି ଭାବନ୍ତି Mervyn Peake ଙ୍କ ପରି ତରୁଣ ଲେଖକ । Peakeଙ୍କ ସୃଷ୍ଟି 'Gormenghast' ଖଣ୍ଡିଏ ଟ୍ରାୟଲୋଜି ବୋଲି ତାଙ୍କର ଯୁକ୍ତି । ସେହିପରି Isaac Asimovଙ୍କ ରଚନା 'Foundation' ଏହାର ଅନ୍ୟ ଏକ ଉଦାହରଣ ବୋଲି Peake ଗ୍ରହଣ କରିଛନ୍ତି । ସେହିପରି Douglas Adamsଙ୍କ ପାଞ୍ଚୋଟି ଉପନ୍ୟାସ, ଏହାର ଶୀର୍ଷକ 'The Hitch Hiker's Guide to the Galaxy'କୁ ଏକ ଟ୍ରାୟଲୋଜିର ଧାରା ରୂପେ କରାଯାଇଛି ଚିହ୍ନିତ । ଜେ ଆର୍ ଆର୍ ଟୋଲ୍‌କିନ୍ (J R R Tolkien), ପ୍ରାକ୍ ବିଶ୍ୱଯୁଦ୍ଧ କାଳୀନ ତାଙ୍କ ଟ୍ରାୟଲୋଜି 'The Lord of the Ring', ସଂକଳିତ ବହି ଛଅ ଖଣ୍ଡ । ତାଙ୍କର ପ୍ରଥମ ଖଣ୍ଡ 'The Fellowship of the Ring', ଦ୍ୱିତୀୟ ଖଣ୍ଡ 'The two Towers' ଏବଂ ତୃତୀୟଟିର ଶୀର୍ଷକ 'The Return of the King' । ସମଗ୍ର ସିରିଜ୍ ଗୋଟିଏ ରିଙ୍ଗ୍‌ର ଗଳ୍ପକୁ ନେଇ ବ୍ୟାପିଛି ଏବଂ ସେହି ରିଙ୍ଗ୍‌ଟିକୁ ନଷ୍ଟ କରିବା ଉଦ୍ୟମମାନଙ୍କ ବର୍ଣ୍ଣନା ଶିଳ୍ପ ରୂପାୟନ ହୋଇଛି ଟ୍ରାୟଲୋଜି । ଆଧୁନିକ ଜୀବନ ଯାତନାର ବ୍ୟାଖ୍ୟା ହେନ୍‌ରି ମିଲର୍ ତାଙ୍କ ତ୍ରୟ ଉପନ୍ୟାସ ସେକ୍ସସ୍, ପ୍ଲେକ୍ସସ୍ ଓ ନକ୍ସସ୍ ପ୍ରଭୃତିରେ କହିଛନ୍ତି ! ବହି ତିନୋଟି ଗତ ଶତକର ନିଖୁଣ ମାଷ୍ଟର ପିସ୍ ।

ଟ୍ରାୟଲୋଜି ଗୋଟିଏ ନୂଆ ରାସ୍ତା । ଏହି ରାସ୍ତା ନିଜର ଲକ୍ଷ୍ୟ ପର୍ଯ୍ୟନ୍ତ ବିସ୍ତୃତ କି ନୁହେଁ ଏହା ଜାଣେ ନାହିଁ ଏହି ଶିଳ୍ପ କି ଏହାର ସ୍ରଷ୍ଟା । ଏହା ଏକ ଏକପ୍ରକାର ଭାଷାର ଅଣବିକ ପରୀକ୍ଷା । ଏହି ପରୀକ୍ଷାରେ କୃତକାର୍ଯ୍ୟ ହେବା ବା ଲକ୍ଷ୍ୟଭେଦ ବିଫଳ ହେବା ଏକ ନିଆରା କଥା । କିନ୍ତୁ ଏହି ପରୀକ୍ଷା କୌଶଳକୁ ରଚନାରେ ଆପଣେଇବା ବଡ଼ ପୌରୁଷର କଥା । ଗର୍ବ ଓ ଗୌରବର କଥା । କେବଳ ନୂଆ ରାସ୍ତାର ଇଂଜିନିୟର ମାନଙ୍କର ଥାଏ ଏହି ତୃଷ୍ଣା ।

ନକୁଳ ଚନ୍ଦ୍ର ସାହୁ



Source: Author, Digitized by PPRACHIN, SOA

"ଗେଟେ ଦେଲେ ମତେ ରୀତି । ପ୍ରଶ୍ନ କରିବା ଫାକୁଲିଟୀ ମୁଁ ନିତ୍ସେଙ୍କଠୁ ପାଇଛି । ଭାନ୍ ଗୋଘ୍ଙ୍କ 'ଲେଟର୍ସ' ପଢ଼ି ନିଜକୁ ଚିହ୍ନିଛି । କେମିତି ସଂଗ୍ରାମ କରି ସରଳ ଜୀବନଟିଏ ଜୀଇବାକୁ ହେବ ମୁଁ ତାଙ୍କଠୁ ଶିଖିଚି ! ଯେଉଁଠି କଳା ହିଁ ସବୁକିଛି ।"

(ହେନ୍‌ରି ମିଲର୍, ପ୍ଲେକ୍ସସ୍, ପୃଷ୍ଠା ୪୮)

Source: Author, Digitized by PPRACHIN, SOA

# ପରୀକ୍ଷିତର ପୁନର୍ଜନ୍ମ

ଜୀବନ ଆରମ୍ଭ ହୁଏ କେଉଁଠୁ ?

ଜନ୍ମଠୁ ?

ତେବେ ସମୟ ହିଁ ସଂସାରର ଶ୍ରେଷ୍ଠ ଗର୍ଭବତୀ ଯୁବତୀ ! ପ୍ରତି ମୁହୂର୍ତ୍ତରେ ପରୀକ୍ଷିତମାନଙ୍କୁ ପ୍ରସବି ଚାଲିଛି ! ପ୍ରସବି ଚାଲିଛି ବାୟୋଲୋଜି, ଟେକ୍‌ନିକ୍, ସାଇକୋଲୋଜି, ସେକ୍ସ, ସାଟେଲାଇଟ୍ ଓ କ୍ରିମିନୋଲୋଜିମାନଙ୍କୁ !

ବହିର ସଜଡ଼ା ପଂକ୍ତିପରି ସେମାନଙ୍କ ଇଚ୍ଛା / ଆଗାମୀ / ପଛକଥା ଓ ବର୍ତ୍ତମାନର ବଟାନୀ !

କ୍ୱାଲିଟି ନଷ୍ଟ ଚାଇଲ୍ଡ ! ଡକ୍ଟର / ପ୍ରଫେସର / ସାଇଣ୍ଟିଷ୍ଟ ! ସବୁ ଚିନ୍ତାର ବାରୁଦ ?

ଜହ୍ନମାମୁଁ ମୃତ, ତଥାପି ଚାଲିଛି ପୋରୁହାଁ ପିଲାର ଅଷ୍ଟମୀ !!

ମଣିଷ ମୋରାଲ ଆନିମଲ୍, ନୁହେଁ ମୋରାଲ୍ ମେସିନ୍ ! ଶୃଙ୍ଖଳା ନିୟମ ନୁହେଁ ନିୟମ ଶୃଙ୍ଖଳ ? କେଜାଣି କ'ଣ ! ବାମପଟେ ଚାଲିବାକୁ ବାଧ ! ଅବୋଧଟା.... ! ଲାଙ୍ଗୁଳୀ ସାହାସରେ ଭାଙ୍ଗିବାର ଦାଗ ! ଏ ଦାଗ ନାହି ତଳ ତଳିପେଟର ? ଧଳା ଧଳା ଫାଟ ! ମଲାଇପରି ହାମୁଡ଼େଇ ଥିବା ବିଶ୍ୱାସନୀୟ ସରୀସୃପ ! ଭବିଷ୍ୟତର ନଛୋଡ଼ବନ୍ଧା ଭାଷାତତ୍ତ୍ୱକୁ ଟଳମଳ ପାଦରେ ଜଡ଼ବାଦ ଥୋଇ ଆସୁଛି ଏକ ପଣ୍ୟସ୍ଥଳରେ ! କ୍ରୟ କରିବାକୁ ମିଳୁଛି ଭଲ ପାଇବା ? ମିଳୁଛି ମଣିଷର ମନ ? ମନର ମଣିଷ ମିଳୁଛି କି ଏଠି ?

ରେସ୍‌ପନ୍‌ସିବିଲିଟିକୁ ଜାଣ ! ଜାଣ ? କ୍ରୀଡ଼ା ନା' ଲୀଳା ? ଲୀଳାମୟ ହେ..... !

ତାଲିକାଟିଏ ! ତାଲୁକାଟିଏ ! ଜୀବନ୍ତ ଈଶ୍ୱରଙ୍କ ଦୀର୍ଘ ଫର୍ଦ୍ଦେ ଜମାଖର୍ଚ୍ଚ ! ସ୍ୱାଧୀନ ଭାରତଠୁ କୁଆଡ଼େ ବହୁତ ଭଲ ଥିଲା ବ୍ରିଟିଶ୍ ଗଭ୍‌ମେଣ୍ଟ !! ନାଲି ପଗଡ଼ି ନାହିଁ ! କଳାମୁଣ୍ଡିଆଙ୍କୁ ବିଶ୍ୱାସ କାହିଁ ?

ସେଇ ନିର୍ଦ୍ଦିଷ୍ଟ ପୁରୁଣା ରାସ୍ତା / ପୁରୁଣା ଜୋତା / ଛିଣ୍ଡା ଚପଲ / ପୁରୁଣା ପାଦ ! ପରୀକ୍ଷିତ ଚାଲିଆସିଛି ପୁରୀରୁ ଛତିଆବଟ ! ଗୋଟିଏ ଜନ୍ମରୁ ଆଉଏକ ଜନ୍ମ ! ଏହା ତା'ର ପୁନର୍ଜନ୍ମ !



Source: Author, Digitized by PPRACHIN, SOA

‘ଆଶା’ କ’ଣ ? ଆଇ ଆମ୍ ଦି ମାଷ୍ଟର ଅଫ୍ ମାଇଁ ଫେଟ୍ ! ଆଇ ଆମ୍ ଦି କ୍ୟାପ୍‌ଟେନ୍ ଅଫ୍ ମାଇଁ ସୋଲ୍ !

ଈଶ୍ୱରଙ୍କୁ ଜାଣ ? ଯେମିତି ସ୍ତନ ଚୂଳରେ କ୍ୟାନ୍‌ସରର ଦାଗ ! ଛୋଟ ଛୋଟ ବ୍ରଣ ! ‘ତମ ଗାଲଯାକ’ / ହାଃ, ଓଡ଼ିଆ କବି ! ପରୀକ୍ଷିତ ଜନ୍ମ ହେଲା ଯୌନାଙ୍ଗରୁ ନୁହେଁ, ତା’ ଜିଭରୁ ! ଶବ୍ଦ ସମୁଦ୍ରରୁ ! ପରୀକ୍ଷିତ ମ୍ୟାନ୍ ନୁହେଁ, ମାଷ୍ଟର ! ଗୋଟାଏ ହଂପ୍ !

ନାଆ ଚାଲିଛି ! ଭଲ କରି ନାଆ ବୋହୁଛି ନାଉରୀ ତଲେଇ କରିଛି ଠିଆ ! କଚେରୀର ଲଂବ ଫର୍ଦ୍ଦେ ନୀଳ କାଗଜପରି ପାଣି ଉପରେ ଚାଲିଛି ଆହୁଲାର ଦସ୍ତଖତ ! ଈଶ୍ୱରଙ୍କୁତ ଜାଣିଚ ? ଗଙ୍ଗାମାତା ଭଲରେ ପାର କରନ୍ତୁ ବୋଲ ଆଉ ଏକବାର – ‘ହରିବୋଲ’ ! ଧର୍ମତଙ୍ଗା ଚାଲିଛି ! ଚାଲୁ ! ପାରି ହେଉଥିବା ଲୋକଗୁଡ଼ିକ ? ଜଣେ ଜଣେ ମଦମୃତ୍ୟୁର ନାୟକ ! ରଥ ଆସୁଛି, ରୁଷିଆରୁ କି ଆମେରିକାରୁ, କିଏ ଜାଣେ କେଉଁଠୁ, କିନ୍ତୁ ରଥ ଆସୁଛି ! ଧ୍ରୁବ ! ଉତ୍ତରରୁ ? ରାଜା ଉତ୍ତାନପାଦଙ୍କ ପତ୍ନୀ ସୁନୀତି ! ସୁନୀତିଙ୍କ ପୁତ୍ର ଉତ୍ତମ, ଧ୍ରୁବଙ୍କ ଜ୍ୟେଷ୍ଠାଗ୍ରଜ !

ଅନ୍ଧାରରେ ସଂତରଣରତ ମତ୍ସ୍ୟର ଉନ୍ମୁକ୍ତ ଚକ୍ଷୁପରି ମଣିଷ ଓ ତା’ର ଆଶାବାଦ ! କି ସୁନ୍ଦର !! ଉତ୍ତମ ଧ୍ରୁବଙ୍କ ଜ୍ୟେଷ୍ଠାଗ୍ରଜ !

‘ଗାଲିଭର୍ସ ଟ୍ରାଭେଲ୍ସ’ .... ଘଟରୁ ଘଟକୁ ! ଘୂରୁଛି – ‘ମୁଁ’ ! ‘ଅଙ୍ଗୁଷ୍ଠ ମାତ୍ରମ୍’, ଛୋଟ ଗୋଟେ ‘ଲିଲିପୁଟ୍’ ! ‘ଛ’,ମାଣ ଆଠଗୁଣ୍ଠ’ପରି ସୁନ୍ଦର ଖଣ୍ଡେ ଦେହର ଚକଡ଼ା ! ସର୍ପପରି ଦୀର୍ଘ ଓ ଶକ୍ତ ଭୁଜ ! କଟିତଟେ ବିଦ୍ୟୁତ୍ ପରି ଲୀଳାୟିତ ପାଟ ପୀତାମ୍ବର ! ଶିରରେ ସ୍ୱର୍ଣ୍ଣ ଉଷ୍ଣୀଷ ଓ ଉଦ୍ଦୀପ୍ତ ହୀରକ ମୁକୁଟ ! ଆରକ୍ତ ନେତ୍ର ! ପ୍ରବଳ ବେଗରେ ଘୂର୍ଣ୍ଣନରତ ସେ ପୁରୁଷ ହସ୍ତ ଭୀମଗଦାରୁ ସ୍ଫୁଲିଙ୍ଗ ହେଉଚି ନିର୍ଗତ !

କଇଁଚିରେ ଶାଣ ଦେବା ଶବ୍ଦ ! ଛୁରୀ ପଝାର ଦୃଶ୍ୟ ?

ଟିଣରେ ହାତୁଡ଼ି ବାରମ୍ବାର ଖାଉଛି ଠୋକର ?

ଅଶ୍ୱତ୍ଥାମାର ବ୍ରହ୍ମାସ୍ତ୍ର ହେଉଛି କ୍ଷୟ ଓ ଜୀର୍ଣ୍ଣ ! ତପ୍ତ ହେଉଛି ଶାନ୍ତ ! ପରୀକ୍ଷିତ ଦେଖୁଛି ନିଦ୍ରାଭଙ୍ଗ ପୂର୍ବର ସ୍ୱପ୍ନ !

ଶ୍ୱେତପାଟ ପରିହିତା ସୁବର୍ଣ୍ଣର ମୂର୍ତ୍ତିଏ କୋମଳାଙ୍ଗୀ ବିଧବା ବଧୂ ଭୟ ଓ ଯନ୍ତ୍ରଣାରେ ସୁତୁରୁତୁ ! କମ୍ପିତ ଓଠ, କଣ୍ଠ ଓ ହୃଦୟର କଂବୁରେ ତା’ ଏକ ନାଦ / ଏକ ଆସ୍ପୃହା / ଏକ ଆବେଦନ/ ହେ କେଶବ, ହେ ଈଶ୍ୱର ! ହେ ସମୟ, ସମୟାତୀତ ! ରକ୍ଷାକର ରକ୍ଷାକର !!



Source: Author, Digitized by PPRACHIN, SOA

କୀଟ କାଟୁଛି ତୁଳସୀଚେର ! ରୁଦ୍ରତାପ ଝାଉଁଳେଇଛି କଖାରୁ ଲତାପତ୍ର ! ପୃଥୁଳୋଦରା ପତଳୀ ନଈ ଲମ୍ବିଯାଇଚି; ଲମ୍ବିଯାଇଛି ତ୍ନୁବଲ୍ଲରୀ ! ଅଥଚ ପେଟ ଭିତରେ ତା' ଛୁରୀ ବା କଇଁଚିରେ କେହି ଧାର ଦେଉଛି !

ହେ ମାଧବ.... କୃତକର୍ମା କୃତାଗମଃ, ସତ୍ତାର ପରମ ପ୍ରଜ୍ଞାନ ! ଅଗ୍ନିମଧୁଝରା ନାମହୀନ ଆବେଗର ସ୍ପନ୍ଦିତ କୁସୁମ ! ହେ ଅସୂର୍ଯ୍ୟ ସୂର୍ଯ୍ୟ......

ଜନନୀ ଆହାରର ଏକ ଅଂଶ ଆହାର କରେ ଗର୍ଭସ୍ଥ ଶିଶୁ ! ମୂର୍ଚ୍ଛିତା ଜନନୀ, ଅଥଚ ଶିଶୁ ଓଷ୍ଠରେ ଅମୃତର ବିନ୍ଦୁ ! ପାହାଚ ପରେ ପାହାଚ ଟପି ଆସିବା ଶବ୍ଦ !!

ପରୀକ୍ଷିତ ଓହ୍ଲାଉଛି !

ଧଳା ଧଳା ନର୍ସ ! ଲେବରରୁମ୍ ଭିତରେ ସ୍ୱତନ୍ତ୍ର ଚଟି ଓ ହାତରେ ଗ୍ଲୋଭ୍ସ ! କ୍ଷୌର କର୍ମର ଚର୍ ଚର୍ ଶବ୍ଦ, ଲୋଶନ୍, ଲାଇଫବୟ, କେୟାର ଫ୍ରି ଓ ସାନିଟାରି ଟାଓ୍ୱେଲ୍ ! ଜନ୍ମ ଯନ୍ତ୍ରଣା ପୀଡ଼ିତାଙ୍କ କରୁଣ ଚିତ୍କାର ! ଗାଇନିକ୍ ଡାକ୍ତର ! ଲଙ୍ଗଳା ମୁକୁଳା ଗୋଲ୍ ଗୋଲ୍ ଜଙ୍ଘ ! ନର୍ସ, ଧାଈ, ମେହେନ୍ତରାଣୀଙ୍କ ଖିଲ୍‌ଖିଲ୍ ହସ, ବିରକ୍ତି ଓ ଅଶ୍ଲୀଳ ଖିଙ୍କାର ! ୟୁଲିସିସ୍‌ର ଦୃଶ୍ୟ ଅଶ୍ଲୀଳ, ସୁଧୁ ଅଶ୍ଲୀଳ ? 'ବର୍ଣ୍ଣନା' ଶିଶୁ କନ୍ୟା; ତା' ତଣ୍ଟି ଘୋଟି ଦେଉଛି ହାତ ! ସତ୍ୟ ଅଥଚ ଅମାନବିକ ! ନିମ୍ନ ବିତ୍ତ ଜୀବନରେ କୁଷ୍ଠରୋଗ ଡାଉରୀ ! ଭୋକିଲା ଜାମାତା ଓ ତା'ପରିବାରର ଡିମାଣ୍ଡ...ୟୁଲିସିସ୍ ଅଗ୍ନି ! ବ୍ୟାନ୍ ! ବ୍ୟାନ୍ !

ସାମ୍‌ନାରେ ଆଲୋକ ସିନ୍ଧୁ ! ମାଟି ! ଗାଲିଭର ପହଞ୍ଚିଛି, ପହଞ୍ଚିଛି ! ହେଇ, ନୂଆ ଦେଶ, ନୂଆ ଦେଶର କି ସୁନ୍ଦର ଦୃଶ୍ୟ ! ଗଛବୃଛ ! ପାହାଡ଼ ! ହେଇ ଦୂରରୁ ଦିଶୁଛି ଧୂଆଁ.... ! ମଣିଷଙ୍କ ଗନ୍ଧ ! ନୂଆ ଦେଶ, ନୂଆ ଦେଶ !

ମରଶରୀରର ସଂକଳ୍ପପରି ଭଗବତ କାମନାର ରକ୍ତିମ ଅବତରଣ : ସାମ୍ନାରେ ସ୍ୱୟଂ ସୁରେଶଃ ଶରଣଂ ଶର୍ମ ବିଶ୍ୱରେତାଃ ! ପୂତାତ୍ମା ପରମାତ୍ମା ଚ ମୁକ୍ତାନାଂ ପରମା ଗତିଃ !

ସଦ୍ୟସୂର୍ଯ୍ୟ ଉଇଁଲା ବିଦାରି ବିଧବା ମାତାର ଯୋନି !



Source: Author, Digitized by PPRACHIN, SOA

# ପରୀକ୍ଷିତର ମାସୋଚିଷ୍ଟିକ୍ ଅଭିଷେକ

ଭବିତବ୍ୟତା / ଅଦୃଷ୍ଟ / ସଫା ସଫା ଦିନମାନଙ୍କରେ କଳାକଳା କଳଙ୍କ / ଦୁଃଖ / ଲୈଙ୍ଗିକ ସଭା ଅଦୃଷ୍ଟର ତୀର ମାଡ଼ରେ ରକ୍ତାକ୍ତ / ଭାସୁଛି ଜୀବନ / ଭାସୁଛି ସଂସାର / ଜଳୁଛି ହେଲ୍ସଲେଶ୍ ଜଂଜାଳ / ଚଂଚଳ, ସବୁ ଚଂଚଳ ! ବ୍ୟବସାୟ / ଇସ୍ମାଇଲ୍ / ଯୋଶେଫ କେ / ସିଦ୍ଧାର୍ଥ / ଓ୍ୱାନ୍ ଆଇଡେଣ୍ଟିଟି; ଓ୍ୱାନ୍ !

'ପରୀକ୍ଷିତ' !!

ମୋତେ ତମେ ବିଶ୍ୱାସ କର, ବିଶ୍ୱାସ କର ! ଅଧିକାରଯୁକ୍ତ ଏକ ତକିଆଖୋଳ ! ଶିକ୍ଷାର୍ଥୀ ନୁହେଁ, ବ୍ୟବସାୟୀ ! ସ୍ୱପ୍ନର !

ଅନୁମୋଦନ ନୁହେଁ, ଥନ୍ତଲପେଟ ! ଅନୁଶାସନ ନୁହେଁ, ସ୍ୱାକ୍ଷର / ଅହଂକାର !!

ମାଧ୍ୟାକର୍ଷଣ କି ବୁଝିବ ସମ୍ମୋହନ ? ଚୁପ୍ ! ଚୁପ୍ ! ଚୁପ୍ !

ଚୁ-ଚୁ-ଚୁ-ଚୁ-ଚୁପ୍ !

ମନେପକାଅ ! ସବୁ ମନେପକାଅ ! ମସନଦ୍- ନା' ମଦିନା ? ପ୍ରଣୟ ନା ପୋଦିନା ? ଥ୍ୟାଙ୍କ୍ ୟୁ, ଥ୍ୟାଙ୍କ୍ ୟୁ ମାଇଁ ବୟ !

ସକାଳ ବଦଳୁଛି ! ଯେମିତି ଖଣ୍ଡେ ପିନ୍ଧା ଶାଢ଼ୀକୁ ଜଣେ ସ୍ତ୍ରୀ ବଦଳାଉଛି ! ପବନରେ ପାଗ ପରିବର୍ତ୍ତନର ବାସ୍ନା ! ବ୍ରା'ରେ ଝାଳ ଗନ୍ଧ ନୁହେଁ, ଇଂଟିମେଣ୍ଟ ବଡ଼ି ସ୍ପ୍ରେ ବାସୁଛି ! ବ୍ଲାଉଜ ପିଠିପଟ ଓଦା, ନକ୍ସା ଖାତାରେ ବ୍ରା'ର ରେଖା ଗୁଡ଼ିକୁ ବିଜ୍ଞାପିତ କରୁଛି !

ବୁଜି ହୋଇଯାଉଛି ଆଖିର ପାଖୁଡ଼ା ! ଛାତିସାରା ଚିତ୍ରିତ ଶିରିଶିରି ରେଶମୀ ଆଲୋକର କବିତା ! ଶୋଇ ଶୋଇ ଶେଯରେ ମକାରୁ ଛଡ଼ାଉଛି ଚୋପା ଓ ଛଡ଼ାଚୋପାରେ ପୁଣି ବୁଜି ଧରୁଛି ମକା !

ମୋ ଭିତରେ ଏସବୁ ଜିନିଷ ମୁଁ ଆଦୌ ଚାହେଁ ନାହିଁ, ଧନ୍ୟବାଦ !

'ଆଇ ରିଜେକ୍ଟ୍ ନଥିଙ୍ଗ୍ !' 'ଆଇ ଏମ୍ବ୍ରାସ୍ ଅଲ୍ !'

ସହାନୁଭୂତିର ଦୁଇବାହୁ ଗୁରେଇ ପକେଇଛି ଉଷୁମ୍ ଛାତି !

ଅଙ୍ଗୁର ପେଟ୍ଟା କ'ଣ ? କୁହ ତ ଦେଖି !



Source: Author, Digitized by PPRACHIN, SOA

ଝିରିଝିରି ଜ୍ୟୋତ୍ସ୍ନାପରି ଚେତନାର ଫଲ୍‌ଗୁ! ଶ୍ୱେତପୁଚ୍ଛ ପବନରେ ଉର୍ଦ୍ଧ୍ୱାୟିତ ! ରକ୍ତ ଶିଖା ଚିରାଳପରି ଉର୍ଦ୍ଧ୍ୱାୟିତ !! ଲକ୍ଷ୍ୟ ପ୍ରତି କୋଷମୁକ୍ତ କରବାଳ ଉର୍ଦ୍ଧ୍ୱାୟିତ ! ପରୀକ୍ଷିତ ଖୋଜୁଛି ଗୋଟିଏ ନୂତନ ସଂବୋଧନ ! ନବ ପରିଚୟ ! ଏବେ ତ ଦ୍ୱିପ୍ରହର ! ଭାରି ଅବେଳ ! ଆଉ ପାରିହେବନି !

'ଦି ଫିମେଲ୍ ଆଇ ସି !' ରହସ୍ୟର ନବପୃଥିବୀ ! ନୂଆମାଟିର ବାସ୍ନା ! ରସର ଓ ରହସ୍ୟର ଏ ପରିରମ୍ଭ ! ଫର୍ଦ୍ଦ ପରେ ଫର୍ଦ୍ଦ ଓଲଟାଉଛି ପରୀକ୍ଷିତ ! ଗୋପୀଭାଷା / ଦଶମ ସ୍କନ୍ଧ / ମାର୍କଣ୍ଡେୟ ଦାସ / ଇତିହାସ / ମନସ୍ତତ୍ତ୍ୱ / ଗଣିତ ! ଗୋଟିଏ ଇସ୍‌ପାତ ଜରାୟୁରୁ ଶତପୁତ୍ର ? ଜଣେ ଗୁରୁ ! ଗୋଟିଏ ଶ୍ରେଣୀର ଛାତ୍ରସବୁ !! ଶିଶୁକରି ବାଟଭୁଲି ଚାଲିଗଲେ ବ୍ୟାକରଣ କାଳାଶୁଦ୍ଧି ! ଅସ୍ପୃଶ୍ୟ ପାଠ ? ଶିଷ୍ୟବୃନ୍ଦ ଭଙ୍ଗି ପଢ଼ିବାକୁ ବାଧ !

ପ୍ରାଣ ଉନ୍ମୁକ୍ତ ଝରକା ! ମର୍ନ ଫର୍ଦ୍ଦେ ଉଡ଼ିଲା ପ୍ରଣୟ ଚିଠି ! ପବନ ଉଡୁଛି ! ଉଡୁ ! ଜହ୍ନିଫୁଲିଆ ପବନ ! କୈଶୋର ପରେ ଯୌବନ ! ଫୁଲଫୁଟା ସକାଳ ପରେ ଖରାବିଂଚା ମଧ୍ୟାହ୍ନ !

ସଜ୍ଜିତ ଶ୍ୱେତଅଶ୍ୱ ପ୍ରବଳ ପରାକ୍ରମରେ ପାରି ହେଉଚି ଅବିଶ୍ୱସ୍ତ ପଥ !

ଟୁଥ୍‌ପେଷ୍ଟପରି ବାହାରି ଆସିଲା ହସ ! ଏ ହସ ଆଜ୍ ଓଲ୍‌ଡ ଆଜ୍ ଲାଇକ୍ ଓଲ୍ଡ ଟେଷ୍ଟାମେଣ୍ଟ ! ବସନା ସେଠି ନିର୍ଦ୍ଦୟ ସମାଧିପରି ! ବୋକା; ହେଲା କ'ଣ ଯଦି ସିଏ ତତେ ଭଲ ନ ପାଇଲା ? ତୋ'ଠୁ ବଢ଼ିଆ ବଢ଼ିଆ କେତେ ଟୋକା ତୋ ଆଗରୁ ତାକୁ ଖାଇ ଦେଇଛନ୍ତି ! ଘୋଡ଼ାଦୌଡ଼ର ଅଶ୍ୱୀ କାହାକୁ ସବୁ ବାଜି ଜିତାଇ ଥାଏକି ?

ନିଜ ସୃଷ୍ଟିର ପ୍ରଜ୍ଞାଦୀପ୍ତ ମୂର୍ଚ୍ଛନା ବୀଥୋଭେନ୍‌ପରି ଶୁଣି ଶୁଣି ସେ ହୋଇଗଲା କାଲ ! କାମର କାଉଁରୀକାଠି ବେଙ୍ଗକୁ କରିଦେଲା ରାଜକୁମାରୀ ! ପୁଣି ରାଜକୁମାରୀକୁ ପାଲଟାଇଦିଏ ବେଙ୍ଗ ! ବସନ୍ତର କି କୁହୁକିଆ କାମ ! କାଫ୍‌କାଙ୍କୁ ଜାଣ ? ତାଙ୍କ କେ. ଦିନେ ସକାଳୁ ଉଠି ଆବିଷ୍କାର କରେ ତାର ଆଙ୍ଗିକର ଘଟିଛି ପରିବର୍ତ୍ତନ ! ସେ ହୋଇଯାଇଛି ମାନବରୁ ଏକ ବୃହତ ଅସରପା ! ଅବଶିଷ୍ଟ ଜୀବନ ସେ ବଞ୍ଚିଥିଲା ସୁଖରେ ! ପରୀକ୍ଷିତର ଅତୀତ ଥିଲା କିନ୍ତୁ କେ.ର ଅତୀତ ନଥିଲା ! ତତଲା ପିଠାଖଡ଼ିକା ପରି ଥିଲା ତାର ଖାଲି ଗୋଟାଏ ଭୟାନକ ବର୍ତ୍ତମାନ !! ସେ ସେଇ ବର୍ତ୍ତମାନଟିକୁ ନେଇ ସନ୍ତୁଷ୍ଟ ତ !

ପରୀକ୍ଷିତକୁ ମଧ୍ୟ ସୁଖ ଲାଗୁଛି ନିଜର ଗାର୍ଡେନ୍ ! ବହୁରଙ୍ଗ ବୋଝେଇ ପୁଷ୍ପ ପଛରୁ ତା' ଅହଂକାରକୁ ଠାରୁଛି ଆଖି ! ତା' ଆଙ୍ଗୁଠିର ଇସାରାରେ ମୁକୁଳିତ ପ୍ରଗାଢ଼ ଅନୁରାଗ କରୁଛି ଅସ୍ଥିର !



Source: Author, Digitized by PPRACHIN, SOA

ରାଜପୁତ୍ର ! ତୁମେ ଏବେ ବଂଦୀ, ବଂଦୀ ! ଏଇ ଦେଖ ! ବଂଦୀଶାଳାର ଉଚ୍ଚ ଉଚ୍ଚ ମୋ' ବକ୍ଷର ଜ୍ୟୋତ୍ସ୍ନାର ନବନୀତ ପ୍ରାଚୀର ! ଡେଇଁଯାଇ ପାରିବ ? ପାରିବ ? ସଦ୍ୟ ପ୍ରସ୍ଫୁଟିତ ପୁଷ୍ପସବୁ ହସିଉଠି ଆନ୍ଦୋଳିତ କଲେ ମଥା ! ନାଇଁ, ନାଇଁ, ନାଇଁ !!!

ସମୟ ଖଣ୍ଡେ ଫୁଲପକା ଶାଢ଼ି, ଲମ୍ବିଛି ! ତା' ଭିତରେ ବିସ୍ମୟକର ମୂର୍ତ୍ତିଏ ନାରୀ ହସୁଛି ? ପଛକୁ ଫେରି ଚାହିଁବାକୁ ଅଶ୍ୱାରୋହୀର ସମୟ କାହିଁ ? ପରୀକ୍ଷିତ ଖୋଜି ଚାଲିଚି ! ଖୋଜି ଚାଲିଛି ଲିଲିପୁଟ୍‌ର ସୁନ୍ଦର ମୁହଁ ! ଏ ସଂସାର ଭିତରେ କେଉଁଠି ମିଳିଯିବ କି !!

ସେୟାଙ୍କ 'ସେଭେଣ୍ଟିନ୍'ର ଦାନିଶ୍ ନାୟକ ଜାକୋବ ହୁଥେର ଲାଟୁର-ପିଟରସନ୍ ଭାବେ, ଯେତେବେଳେ ସେ ତା' ସେଇ ଦିନଗୁଡ଼ିକରେ କୌଣସି ସ୍ତ୍ରୀକୁ ଭେଟେ, ତା'ର ପ୍ରଥମ ଭାବନା ଆସେ,- ମୋ' ସହ ପ୍ରଣୟ ରଚନା ପାଇଁ ଇଏ ଯୋଗ୍ୟା ? ଅପ୍ରତ୍ୟାଶିତ ଓ ଅବଚେତନର ଏଇ ଭାବନା ! ପୁନଶ୍ଚ ଯେଉଁଠି ଥାଏ ଆଶା, ସେଠି ଥାଏ ଜୀବନ ! ସେଇଠି ଥାଏ ସ୍ୱପ୍ନ, ଖରା ଓ ଜ୍ୟୋତ୍ସ୍ନା !

ଗ୍ଲାସ ବୋଝେଇ ସ୍ୱର୍ଣ୍ଣିଳ ସ୍ୱପ୍ନିଳ ବିୟର୍‌ର ଉଜ୍ଜ୍ୱଳ ମୁଲାୟମ ଫେନରାଜି ! ମେରିଗୋଲ୍‌ଡର ଛତା, ସାମ୍ନାରେ ହେନାର ବିଞ୍ଚଣା ! ପାଦତଳେ ସବୁଜପତ୍ରର ଗାଲିଚା ! ଦୁଇବାହୁ ତଳେ ଦୁଇଟି ଯୁବତୀଙ୍କ କାନ୍ଧ ଓ ପାପୁଲି ବେଳେ ବେଳେ ଆଉଁସି ଆଣେ ସେମାନଙ୍କ ଉଦ୍ଧତ ବକ୍ଷୋଜ !

ଇଏ ତା' ରାଜଶିଷ୍ଟାଚାର ଯାତ୍ରା !

ତମକୁ ଚାନ୍ଦ ଦେବି ! ସୁନାର କୁଲେଇ ଦେବି, ପାରିଜାତ ଫୁଲ ଦେବି ! ଦେବି ! ମୋ ପେଁକାଳି ବାଜୁ ! ବାଜିଲା !

ମୁଁ ନଚିକେତା ! ମହାମାନ୍ୟ ମନ୍ତ୍ରୀ ! ସେଂଟ୍ ଅଗଷ୍ଟିନ୍ ! ଆପଣଙ୍କୁ ଠାକୁରଙ୍କ ଦେଇ ! ମା' ରାଣ ! .... ତୁ ଶାଲା ଶୁଅର କା ବଚା, ବିରୋଧୀ ଦଳର ଭୋଟର ! ତତେ ଦେବିନି ରେସନ୍ କାର୍ଡ ! ରିଲିଫ୍ ତତେ ମିଳିବନି ! ତୋ ଝିଅ ରେପ୍ ଓ ମର୍ଡର ହେଲେ ହେଲା କ'ଣ ? ଏଫ୍.ଆଇ.ଆର୍ ଏଠି ଲଜ୍ ହୋଇ ପାରିବନି !

ଅଭିଷେକ ପର୍ବତ ତଳେ ଦଣ୍ଡାୟମାନ ଅଭିଷିକ୍ତ ପରୀକ୍ଷିତ ! ପୃଥୁପରି ତା' ବାହୁ ଫାଶରେ ପୃଥୁଳା ପୃଥ୍ୱୀର ପରିଶ୍ଳେଷ ! ଶିଥିଳ ପହରଣ ! ସୁଖ ନୁହେଁ, ଶରଶଯ୍ୟାରେ ପ୍ରତ୍ୟଂଖ ! ମୈଥୁନ ଅର୍ଥ ସୁଖ ନୁହେଁ; ପେନ୍ ଆସୋସିଏଟେଡ୍ ଉଇଥ୍ ପ୍ଲେଜର୍ ! ସଂପୂର୍ଣ୍ଣ ମାସୋଚିଷ୍ଟିକ୍ ବା ସାଡୋ- ମାସୋଚିଷ୍ଟିକ୍ !

ଏଇଟା ସମୟର ଧର୍ଷଣ !... ସମୟ ଭୁଲ କରୁଚି ବ୍ୟାକରଣ !!



Source: Author, Digitized by PPRACHIN, SOA

# ଆଖି ଭିତରେ ଡ୍ରଗ୍‌ସ.....

ପ୍ରତିଷ୍ଠିତ ପରୀକ୍ଷିତ ହସ୍ତରେ କଲମପରି କ୍ଷୁଦ୍ର ଅଥଚ ଶକ୍ତ ଏକ ରାଜଦଣ୍ଡ !

ମସୀ ଓ ଅସୀ ! ସଂକ୍ରାମକ ରୋଗ ବାହକ ମକ୍ଷି ଓ ଭୟାନକ ବ୍ୟାଘ୍ରୀ !

ଅନ୍ଧାରର ସହସ୍ର ବାହୁ, ସହସ୍ର ପାପୁଲି ! ସବୁ ପାପୁଲିରେ ଶକ୍ତି ଓ ଭୟର ସର୍ପଙ୍କ ଫୁତ୍କାର ! କିର୍ଯ୍ୟେକେଗାର୍ଡଙ୍କ 'ଫିଅର ଆଣ୍ଡ୍ ଟ୍ରେମ୍ବ୍‌ଲିଂ' ! ବୁଦ୍ଧଙ୍କ ଶାନ୍ତ ମୁଦ୍ରା ? ଶସ୍ତ୍ର ହସ୍ତରେ ନାହିଁ ! ଗଛକୁ ଯେମିତି କାଟେ କୁଠାର, ଠିକ୍ ସେମିତି ଆଲୋକର ଚୋଟ ଖାଏ ଅନ୍ଧାର ! ତଥାପି ଛିଡ଼େନା ଗଣ୍ଡି ! ଛିଣ୍ଡେ ନାହିଁ ନାକ କିମ୍ବା ନଖ ! ଅନ୍ଧାରର ଅକ୍ଟୋପାସ ବାହୁ ଘେରିଯାଏ ଯେମିତି ଖଣ୍ଡେ ଶୀତବସ୍ତ୍ର !

ଏତେ ଅନ୍ଧାର ଆସିଲା କେଉଁଠୁ ? କେଉଁଠୁ ଏ ଧୂଆଁ କୁଂଡଳୀ କାଟି ସାରା ସଂସାର ବ୍ୟାପି ଉଠୁଚି ଊର୍ଦ୍ଧ୍ୱକୁ ? ଏ କ'ଣ ଭୋପାଳର ବିଷାକ୍ତ କାର୍ବାଇଡ୍ ଗ୍ୟାସ ? ନା ପରମାଣୁ ରିଆକ୍ଟର ଫାଟିଛି କେଉଁଠି ?

ସମୁଦ୍ର ଜଳୁଛି ! ଆକାଶ ସାରା ବ୍ୟାପୁଛି କଳାକଳା ପୃଥିବୀ ! ସଗର ସହସ୍ର ସୁତ ପୃଥିବୀକୁ ଅନ୍ନରୂପେ ଗ୍ରାସି ଚାଲିଛନ୍ତି ! ନଈବାଲି ସରି ସରି ଆସୁଛି !

ଅନ୍ଧାର ସରିଗଲେ ଆସିବ ଆଲୋକ ! ଆଲୋକ ସରିଗଲେ ?

ଯଦି ସବୁତକ ଅନ୍ନ ସରିଯାଏ ?

ଇଲିୟଟ୍‌ର ବନ୍ଧ୍ୟାମାଟି ଆଖି ନିସ୍‌ପଲକ ! ନାହିଁ ଅଶ୍ରୁ, ନାହିଁ ପ୍ରଶ୍ନ, ନାହିଁ ହସ, ବା ସହବାସର କୌତୁକ ! ନଦୀର ନାମ ନୀରସ ଚାଲି ! ଜୀବନର ନାମ ମୃତ୍ୟୁ ଆଡ଼କୁ ମୁହାଁମୁହିଁ କାଂଚି ଅଭିଯାନ ! କିମ୍ବଦନ୍ତୀରୁ କାହାଣୀର ଜନ୍ମ ଏବଂ କାହାଣୀରୁ ଇତିହାସର ଖୋଜ !

ଖୋଜ ଚିହ୍ନ ଏତେ ଶୀଘ୍ର ସିକତା ଶେଯରୁ ଲିଭିଯାଏ ? ପୋଛିନିଏ ପାଣିର ପାପୁଲି କିମ୍ବା ପବନର ପଣତ ! ଯେଉଁ ସାଦା ବାଲିକୁ ସେଇ ସାଦା ବାଲିର ଫିକା ଫିକା ଓଠ !

ମହାଭାରତ ଯୁଦ୍ଧ ପରେ ଆଉ ଭୌଗୋଳିକ ସ୍ୱାଧୀନ ରାଜ୍ୟ ଥିଲା ପରୀକ୍ଷିତ ପାଇଁ କରଦ ହେବାକୁ ?



Source: Author, Digitized by PPRACHIN, SOA

ସାମ୍ରାଜ୍ୟବାଦୀ ନିଶା ଅଶ୍ୱମେଧ ଅଶ୍ୱ ବୋହିନେଲା ହସ୍ତିନାରୁ ଚାଇନା ଓ ଆମେରିକା ! ଜର୍ମାନ୍, ବୁଲଗେରିଆ, ରୁଷିଆ ଓ ଏମିଲିଜୋଲା ! ହୁଇଟିମ୍ୟାନ୍, ଟ୍ରଟସ୍କି ଓ ଆଲବର୍ଟ କାମ୍ୟୁର 'ରିବେଲ୍' ! ମାନବୀୟ ସ୍ୱଭାବ କିଛି ନାହିଁ, ସବୁ କର୍ମଫଳ ! ସୁ ର ସୁ ଓ କୁ ର କୁ ! ମହାନ ଲକ୍ଷ୍ୟ ସାଧନ ପାଇଁ ଆଦର୍ଶ ମଣିଷକୁ ଗଢ଼ିବାକୁ ହେବ ! ମାର୍କସୀୟ ରିଏଲ୍ ଆବେଗ ! ସାର୍ତ୍ରେଙ୍କ ଆଗ ଧାଡ଼ି ସତ୍ତା ଓ ଶୂନ୍ୟତା ! କିନ୍ତୁ ଭିନ୍ନ ଥିଲା ପରୀକ୍ଷିତ କଥା ! କାମ୍ୟୁଙ୍କ ପାଖେ ପାଖେ ଥିଲା ତା' ଯୁକ୍ତିର ପଇତା !

ଅସ୍ତିତ୍ୱବାଦ ଏକ ଶକ୍ତ ଦାର୍ଶନିକ ଆତ୍ମହତ୍ୟା ? ମଣିଷ ପାଖେ ପାଖେ ଅଛି ନ୍ୟାୟବୋଧ, ସାଧୁତା ଓ ସଦ୍‌ଗୁଣର ଗାମୁଛା ! ମଣିଷ ବେଖାପ ! ସଂଗତିହୀନ ମଣିଷ ନିର୍ବୋଧ, ହାସ୍ୟସ୍ପଦ ! ତା' ଜୀବନ ଅବସର୍ଡ / ଉଭଟ ! ମରସଲ୍ଟ !! ପାପୀ, ପାପୀ ମଣିଷ ! ସାଧାରଣ ଲୋକଠୁ ଭିନ୍ନ ଗହ୍ୱର ଚରିତ୍ର.... ପରୀକ୍ଷିତ : ପରୀକ୍ଷିତ ସାମ୍ରାଜ୍ୟବାଦୀ, ପୁଣି ସାମ୍ରାଜ୍ୟବାଦୀ ଦାର୍ଶନିକ ! ରୋମ୍ ଜଳୁଥିଲାବେଳେ ବନ୍ଦୀ ସମ୍ରାଟପରି ସେ ଜଣେ ବଂଶୀବାଦକ ! ସବୁ ରଂଧ୍ରରେ ତା' ଟିପର ଚାପ ଚିପିଧରିଚି ବଂଶୀର ବେକ ! ବଂଶୀର ଧ୍ୱନି ମଧୁର ! ବଞ୍ଚି ରହିବା ମଧୁର !

ବଂଶୀସ୍ୱନରୁ କିଛି ଅର୍ଥ ମିଳେନା ? ଜୀବନରୁ କିଛି ମାନେ ମିଳେନା !

ଖଡ଼ିରତ୍ନ କହିଛି, ଆଗାମୀ ସଂକ୍ରାତି ପରେ ବୁଧ ଆସିବ ଶୁଭକୁ ! ବୃହସ୍ପତି ପଞ୍ଚମକୁ ! ସୁତାର୍ଥ ଲାଭ ନବ ପଞ୍ଚକେଷୁ !

ଜୀବନ ଉଭଟ କିନ୍ତୁ ଜୀବ ସତ୍ୟ ! ଜଗତ ସତ୍ୟ ! ଯୁଦ୍ଧ ଓ ପେଟ୍ରୋଲ୍ ଦର୍ ଅନିୟନ୍ତ୍ରିତ ! ବଜାର ଭାଉ ଅନିୟନ୍ତ୍ରିତ ! ରାଜନୀତି ଉଭଟ ! ନେତା ସତ୍ୟ ! କୋଠା ସତ୍ୟ ! କୋଠି ସତ୍ୟ ! ପେନ୍‌ସନ ଓ ଚାନ୍ଦା ନ୍ୟାୟ ! ଚୋରି କରମୁକ୍ତ ଆୟ ! ବ୍ୟୟ ସଂତୋଷଜନକ ! ସଂକୁଚିତ କଲମ ! ପ୍ରସାରିତ ବିଲ୍ ଓ ଫାଇଲ୍ ! ପରୀକ୍ଷିତ ଚାଲିଆସିଲାଣି ଅଫିସ୍ ତାରବାଡ଼ କାଟି ବାହାରକୁ ! ଗୋରୁପରି ପାନଚୋବା ବାଡ଼ବାବୁ ଭକୁଆଟା ଭାଗନେଇ ବସିବ ! ବସ୍ସୁ, ଅଫିସର ଯିବାଯାଏ ! ଯିଏ କରିବ କାମ ତାରି ପାଖରେ ଯା'ମ ! ନ କଲେ କିଏ କାଟି ନେଇ ତେଲ ଘଡ଼ିରେ ପକେଇବ ଯେ ? ଫାଣ୍ଡି ସିପେହୀ ହେବା ଭଲ ! ମାଡ଼ ଖାଇଥିବା ଲୋକଠୁ କାଢ଼ ମାଲ୍; ଡାଏରି ଏଣ୍ଟ୍ରି ହେବ !' ମାଡ଼ ଦେଇଥିବା ଆକ୍ୟୁଜଠୁ 'ଦେ ବେ ମାଲ୍, ଶାଳା ଦେବି ଭିତରକୁ ଠେଲି ଯେ ବୋପା ବାହାଘର ଦେଖୁଥିବୁ !' ଖବରକାଗଜ ଲେଖିଚି ବଲଙ୍ଗାବଜାର ଶେଷରେ ଠାକୁରାଣୀ ପାଷାଣ ମୂର୍ତ୍ତି ନେତ୍ର ଯୁଗଳରୁ ଅବିରତ ଅଶ୍ରୁ ଖସୁଛି !



Source: Author, Digitized by PPRACHIN, SOA

ସୁଭଦ୍ରା ଜନ୍ମ ହେଇଛନ୍ତି ! ଦର୍ଶନ ପାଇଁ କି ଭିଡ଼ ! ହୁକୁମ ଚାଲିଛି ! ହୁକୁମ ସ୍ଥଳ ଦଳାଚକଟାରେ ଆହତ କେତେ ? ଯୁଦ୍ଧରେ ମୃତ ଓ ନିଖୋଜ ସୈନ୍ୟଙ୍କ ହିସାବ କାହିଁ ? ନିମ୍ବ ଗଛରୁ ସେଓ ଫଳୁଛି ! ତୁଳସୀପତ୍ରରୁ ମଦ ବାହାରୁଛି ! ଭଲ ଖୁବ୍ ଭଲ !

ଆର୍ଟିଷ୍ଟର ବଙ୍କା ଭଙ୍ଗା ବୃଷଭ ମୂର୍ତ୍ତି ଏକ ପାଦରେ ଠିଆ ହୋଇଛି ! ତା' ସାମ୍ନାରେ ମୃତବତ୍ସାକୁ ଦୁଗ୍ଧପାନ କରାଇବାକୁ ପ୍ରତୀକ୍ଷିତା ଅଶ୍ରୁଳା ନିରୀହା ଗାଈ ! ଚକ୍ଷୁ କୋଣରେ ତା' ଲହୁର କଷ ! ଶ୍ୱେତବସ୍ତ୍ରରେ କଦଳୀକଷ ! ଶୋକର ଜୀବାଣୁମାନେ ଶକ୍ତ କରି କାମୁଡୁଛନ୍ତି ! ଡାଆଣ ବସିଛି, ବସେଇଛି ଦାନ୍ତ ! ପୁଚ୍ଛ ପୋଛି ପାରୁନି ପ୍ରଶ୍ନ !

ସାର୍ତ୍ରେ, ଆପଣଙ୍କ 'ବିଇଂ ଏଣ୍ଡ ନଥିଙ୍ଗନେସ୍' କି ବହି ସେ ? ପଢ଼ିଲେ ମିଳିବ ଗୋଟେ ଚାକିରୀ ?

'ଲୋଲିତା'ର ନରମ ଉଷୁମ୍ ମାଂସ ଆପଣଙ୍କ ଟ୍ରାୟୋଲଜିର ଫର୍ଦ୍ଦତକ ତ ??

ପରୀକ୍ଷିତର ତିନୋଟିଯାକ ଅଶ୍ୱମେଧ ଓ ଦିଗ୍‌ବିଜୟ ପର୍ବ ଇଭାନ୍ ଡେନିସଭିଚ ଜୀବନର ମାତ୍ର ଗୋଟିଏ ଦିନର ଫର୍ଦ୍ଦ ! କ'ଣ ମଣିଷର ଦାମ୍ ? ମଣିଷ ବଦଳି ଯିବ ! ଆଜି ଏମିତି, କାଲିକୁ ସେମିତି, ପୁଣି ପରଦିନକୁ ଆଉ କ'ଣ ତାର' ଆକୃତି !

ଘଟଣା ସବୁକୁ ବଦଳାଇ ଦେବ ! ପହଞ୍ଚିଯିବ ଡକ୍ଟର ଜିଭାଗୋ, ପହଞ୍ଚିବ ଜର୍ମାନ୍ ସିଦ୍ଧାର୍ଥ, ଭାରତୀୟ 'ଗୋରା' ଆସିବ ! ଜାଁ ଖ୍ରୀଷ୍ଟୋଫର ଓ ଶ୍ରୀକାନ୍ତ କରମର୍ଦ୍ଦନ ଘଟିବ ! ଇଭାନ୍ ଇଲିଚି ମରିବ !

ବଞ୍ଚିଛୁ, କେମିତି ବଂଚିଛୁ ? ପୂର୍ବରୁ ଯେମିତି ବଞ୍ଚିଥିଲୁ ତ ? ଠିକ୍ ସେମିତି ? ସୁଖୀ ଜୀବନ ! କ'ଣ ତୁ ଚାହୁଁଚୁ ? ଚାହୁଁଚୁ କ'ଣ ? "ନଟ ଟୁ ସଫର ! ଟୁ ଲିଭ୍ !"

ଜୀବନ ଅତୃପ୍ତ ଭୋଗ ! କଅଁଳ ଓଠର ମଦିରା ପାତ୍ର ! କିନ୍ତୁ ତା' ଚତୁଃପାର୍ଶ୍ୱ ଲକ୍ଷ୍ମଣରେଖାର ! ଆସ୍ଥାହୀନ ଆଶ୍ରାହୀନ ଦୁର୍ବଳ ସକାଳ !

ମରସଲ୍ଟ ପାଇଁ ଭଲ ପାଇବାର କିଛି ଅର୍ଥ ନଥିଲା, ବିବାହର କିଛି ମାନେ ନଥିଲା, ବିବାହ ଯଦି ଆନନ୍ଦ ଦେଇପାରିବ ତେବେ ତା' ପାଇଁ ଭଲ ଶୀଘ୍ର ବିବାହ ହୋଇଯିବା !

ଉତ୍ତରାର ପୁତ୍ରୀ ଇରାବତୀ ! ପରୀକ୍ଷିତ ତାକୁ ବାହା ହୋଇ ପଡ଼ିଲା !

ଭୟ ଓ ମୈଥୁନ ?

ଭୟ ଏକ ବାୟୋଲଜିକାଲ ପ୍ରବୃତ୍ତି ! ଭଲ ପାଇବା ମାଥ୍‌ମେଟିକାଲ୍ ସହଜାତ ଗତି !



Source: Author, Digitized by PPRACHIN, SOA

ଭୁଲ୍ ଏକ ଜ୍ୟାମିତିକ କୃତି ! ମାନବିକତା ଜଳ ଉର୍ଦ୍ଧ୍ୱରେ ଆନ୍ଦୋଳିତ ମୁକୁଳିତ ଲୋହିତ ସରୋଜ ! ପରୀକ୍ଷିତ ଜଣାହେଲେ ବି ଅଜଣା, ଲଭଲି, ଲଜିକାଲ୍ ଓ ଭାରି ଇନୋସେଣ୍ଟ୍ ! ଡିସିପ୍ଲିନ୍ ବ୍ୟକ୍ତିତ୍ୱଟି ସଂଖ୍ୟାବାଚକ ! ପରୀକ୍ଷିତ ଏକ ସଂଖ୍ୟା ! ଇରାବତୀ ତାକୁ ବୁଝେଇଛି ରାତି ରାତି ବିନିଦ୍ର ଆଖି ସୌନ୍ଦର୍ଯ୍ୟ ତତ୍ତ୍ୱ ! ନନ୍ଦନ ତତ୍ତ୍ୱ ! ବାମ ଓ ଡାହାଣ ! ଠିକ୍ ଭୁଲ୍ ଚିହ୍ନ ! ଟ୍ରାଫିକ୍ ନିୟମ ! ସାଇକୋ- କେମିକାଲ ! ଅମୃତର ସନ୍ତାନ ! ଜଣକ ପରେ ଜଣେ ସବୁଜ ସଂଖ୍ୟାର ବର୍ଗ ଘନ ! ତଥାପି ଅବ୍ୟାହତ ହୀନ ସମୁଦ୍ର ମନ୍ଥନ ! ଅନନ୍ତ ପ୍ରସବିନୀ ମାଟି ! ବାରମ୍ବାର ଦୁଗ୍ଧ ସମୁଦ୍ରରୁ ଏକ ପରେ ଏକ ଅପୂର୍ବ ବାହାରି ଆସିଚି ! ଶେଷକୁ ଅତି ଲେମ୍ବୁ ... ପିତା !

ଚିତ୍ତ ବିନୋଦ ପାଇଁ 'ପାରିଧି' ... ଉପେନ୍ଦ୍ର ଭଞ୍ଜ କବିତା ! ତୁଳା ଶେଯଟାକୁ କେତେ ଆଉ ଦଳିବ, ଚକଟି ଚକଟି ଲହୁଣି କାଢ଼ିବ !!

ରସକଲ୍ଲୋଳ କି କଲ୍ଲୋଳରସ ? ଏକ କଥା କଳା-କୌତୁକ ! ପରିବର୍ତ୍ତିତ ପରିବର୍ଦ୍ଧିତ ସବୁ ଏକ ନବ ସଂସ୍କରଣ ? ପାରିଧି ଭିତରେ ଏବେ ସର୍କସର ଖେଳ ! ଚାଲୁ ସର୍କସ ! ଗୋଟିଏ ଶଯ୍ୟାରେ ସୁନ୍ଦରୀ ରମଣୀ ସହ ଶୟନ କରୁଛି ପୋଷା ସିଂହ ଅନୁତେଜିତ ଦେହର ରହସ୍ୟ ?

ମୁଁ ତୁମ ସ୍ଥିତିବାଦକୁ ବିଶ୍ୱାସ କରେନା ସାର୍ତ୍ରେ; ମାନବବାଦରେ ମୋ ଅର୍ଘ୍ୟ ! କାମ୍ୟୁ ! ମୁଁ ଜାଣେନା ତୁମ ମାନବୀୟ ସ୍ୱଭାବ, ଉଭଟତାବାଦୀ ମୂଲ୍ୟହୀନ ଭାବ ! ମଣିଷ କଞ୍ଚାମାଟି ! ତାକୁ ମୂଲ୍ୟଯୁକ୍ତ କରି ଗଢ଼ିବାକୁ ହେବ !

ପାଗ ବଦଳୁଛି ! ଅବଗୁଣ୍ଠନ ବଦଳୁଛି ! ରହସ୍ୟ କୁହୁଳୁଛି ! କିନ୍ତୁ ପ୍ରୀତିମଞ୍ଜୁଳ ଯେଉଁ ରକ୍ତ ଓଷ୍ଠକୁ ସେଇ ରକ୍ତ ଓଷ୍ଠ ! ଅସଂଲଗ୍ନ ବିକ୍ଷେପ ଓ ଆତ୍ମତୋଷଣ ଆଶ୍ଳେଷ !

ଅବୈଧ ସଂପର୍କ ପରି ପରୀକ୍ଷିତ ଅଶ୍ୱ ପୃଷ୍ଠରେ ଧାବନରତ ! ରତରତ ଖେଳ ! ରାଜକୀୟ ଭୟ କ୍ଷୁଧା ପାଇଁ ନିରର୍ଥକ ! ସାମ୍ନାରେ ତୃଷ୍ଣାର ଲୟହୀନ ସ୍ଥିତି ! ଆଲେକ୍‌ଜାଣ୍ଡାରପରି କେଉଁଠୁ ଆସି ସେ ପହଞ୍ଚିଛି କେଉଁଠି !! କ୍ଷୁଧା ଓ ତୃଷ୍ଣାର ପ୍ରାପ୍ୟ ତାକୁ କରି ଦେଉଥିଲା ଅସ୍ଥିର ! ଶୂନ୍ୟ ନଭୋମଣ୍ଡଳରେ ଛାଇ ଆସୁଥିଲା ଅସମୟର ଅନ୍ଧାର ! ବାରମ୍ବାର ନୃତ୍ୟରତ ପଦଯୁଗଳର ନୂପୁର ଅସ୍ଥିରରୁ କରୁଥିଲା ଅସ୍ଥିରତର ଓ ଅସ୍ଥିରତମ ! ଏଠି ଶୁଣୁଛି କିଏ କାହା କଥା ? ଦେଶ ସ୍ୱାଧୀନ ! ଯେଝା ହାତରେ ଯିଏ ଚଉଦ ପା' !


Source: Author, Digitized by PPRACHIN, SOA

# ବ୍ଲୁ ପୋଲସ୍

ଈଶ୍ୱରଙ୍କ ପ୍ରତି ଉତ୍ତରଦାୟୀ ରାଜା, ନାଗରିକଙ୍କ ପ୍ରତି ନୁହେଁ !

ଧର୍ମ ସର୍ବଶ୍ରେଷ୍ଠ; ରାଜା ଓ ରାଜ୍ୟ ଧର୍ମର ଅଧୀନ !

ଷ୍ଟୁଆର୍ଟ ଓ ଥମାସ୍ ହବ୍‌ସ !! ଗୃହଯୁଦ୍ଧର ମୋଟା ଇତିହାସ ! ଲୋକ ସାମାଜିକ ! ଘରେ ରହିଲେ ବି ଗୃହସ୍ଥ ସିଂଦୁକ ଓ ଆଲମିରାରେ ପକାଏ କୋଲପ ! କାରଣ ? ଅବିଶ୍ୱାସ ଓ ଭୟ !

ମନୁଷ୍ୟ ବିକାଶଶୀଳ ! ମନୁଷ୍ୟ ପ୍ରେରଣା ପ୍ରଭାବିତ ! ପ୍ରାକୃତିକ ଓ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ! ସ୍ୱାତନ୍ତ୍ର୍ୟ ନଷ୍ଟ ଅନିୟନ୍ତ୍ରିତ ! ବ୍ରେକ୍‌ଲେଶ୍, ଲଗାମହୀନ ! ଅନିୟନ୍ତ୍ରିତ ଅଭିଶପ୍ତ ! ଦେଖିଚାହିଁ ଅନ୍ଧକାର ଖାଇ ଭିତରକୁ ଲଂଫପ୍ରଦାନ କରୁଥିବା ଅଶ୍ୱ !

'ଉଇଲ୍ ଅଫ୍ ରାଇଟ୍ସ'.... ସତ୍ୟ କହିବା ଉତ୍ତମ, ମିଥ୍ୟା ପାପ !

ପ୍ରାକୃତିକ ମନୁଷ୍ୟ ବିବେକଶୀଳ, ସାମାଜିକ ଓ ନୈତିକ ! ଶ୍ରମ ଶକ୍ତି ଦ୍ୱାରା ସଂଗୃହୀତ ପଦାର୍ଥ ହୁଏ ତା' ବ୍ୟକ୍ତିଗତ ! ନଚେତ୍ ରାଜ୍ୟର ସବୁ ! ଲକ୍‌ଙ୍କ ଛାତ୍ର ମାର୍କ ! ଶ୍ରମ ଦ୍ୱାରା ବସ୍ତୁର ମୂଲ୍ୟ ହେଲା ନିରୂପିତ ! ଲକ୍‌ଙ୍କ ପୃଷ୍ଠା ଓଲଟିଗଲା ପରେ ଉପସ୍ଥିତ ହେଲେ ରଷୋ ! ରାଜ୍ୟକ୍ରାନ୍ତି ପ୍ରବର୍ତ୍ତକ ! ଜନୈକ ପାଦ୍ରୀଙ୍କ ଦପ୍ତରରେ ରଷୋଙ୍କ ପ୍ରଥମ ଚାକିରି ! ଅସୁବିଧା ପ୍ରକୃତି ହେତୁ କିଛିଦିନ ପରେ ବିତାଡ଼ିତ ହେଲେ ସେଠୁ ! ପୁଣି ପରେ ଢିଙ୍କିକୁ ମିଳିଥିଲା କର୍ମ ! ଧାନକୁଟା ସହ ମିଛ, ଚୋରି ଓ ଲଫଙ୍ଗାମୀ ! କୁସଙ୍ଗୀ !

ଜୀବନର ମଙ୍ଗ ଇମିତି ପହଁରିଚାଲେ ଅନ୍ଧାରରେ ଅନ୍ଧାରରେ ! ପହଞ୍ଚେ ଦିନେ ଏକ ନିଆରା ପଠାରେ ! ଧନବତୀ ନାରୀ ଏକ ବତାଏ ବାଟ ! ପଢ଼ାଏ ପାଠ ! ନୂଆ ମୂର୍ତ୍ତି ତିଆରି କରି ଠିଆ କଲା ହାତ ! ଗରୀବ ବସ୍ତିରେ ସେ ଗାଏ ଜୀବନ ସଂଗୀତ ! ସେଇଠି ସେ ଦେଖେ ମୁଣ୍ଡ ଗୁଞ୍ଜିବା ପାଇଁ ରାହା ! ରାସ୍ତା ମିଳେ ! ସକାଳ ମିଳେ !

ବରଂ ମଣିଷ ବୃତ୍ତିର ଦାସ ! ମଦ ଦୋକାନଟିଏ ଖୋଲିଲେ ରଷୋ ! ବିରାଟ ଦାର୍ଶନିକ !! ସେଇଠି ଅନ୍ଧାର ଭିତରେ ହାତମୁଠା ଭିତରେ ଚାପି ହୋଇଗଲା ଗୋଟିଏ



Source: Author, Digitized by PPRACHIN, SOA

ଆଉ କା' ନରମ ପାପୁଲି ! ଅନ୍ଧାର ପରି ବ୍ୟାପିଗଲା ସଂପର୍କ ! ବନ୍‌ଶୀ ପଡ଼ିଛି ଗାଧୁଆ କୁଣ୍ଡରେ ! ଖାଉଛନ୍ତି ମାଛ ? ଅବିବାହିତା ଚାକରାଣୀଟା ଜନ୍ମକଲା ଗୋଟା ଗୋଟା ଛୁଆ ପାଞ୍ଚଟା !

୩୭ ବର୍ଷ ବୟସରେ ମଦ ଦୋକାନଦାର ରଷୋ ରଚନା କଲେ – 'ବିଜ୍ଞାନ ଓ କଳାର ଉନ୍ନତିରେ ନୈତିକତାର ଘଟିଚି ଉନ୍ନତି ନା ଅବନତି' ମିଳିଲା ପାରିତୋଷିକ କିଛି ! ଆସିଲା ପରିବର୍ତ୍ତନର ଚିଠି !

ଆଧୁନିକ ସଭ୍ୟତା ମନୁଷ୍ୟକୁ ଅନୈତିକ ଓ ବ୍ୟଭିଚାରୀ କରିଛି; ରଷୋ ଲେଖି ଚାଲିଛି ଲେଖି ଚାଲିଛି ! ଲେଖୁଥିଲା ବେଳେ ବିଦ୍ୟୁତ୍ ବୋର୍ଡ ଲାଇନ୍ କାଟି ଦେଇଛି ! ଚେୟାର ଉପରୁ ଉଠିଯାଉଥିବା ରଷୋ ବ୍ୟକ୍ତି ଅନୁଭୂତିର ପ୍ରତିକ୍ରିୟା କାଗଜ ଉପରେ ରଖିଯାଉଛି ! ପରୀକ୍ଷିତ ପଡୁଛି, ସେ କାଗଜକୁ ! କାଗଜସାରା ଯାକ୍‌ସନ୍ ପୁଲୋକ୍‌ର ସ୍ୟାହି ଛିଂଚା 'ବ୍ଲୁ ପୋଲସ୍' ! କିମ୍ବା ଆଲବର୍ଟେ ଜିଆକୋମେଟିର ସ୍ଥାପତ୍ୟ 'ମ୍ୟାନ୍ ପଏଣ୍ଟିଂ ବା 'ଓ୍ୱେଟିଂ ଫର୍ ଗୋଦୋ !'

ମ୍ୟାନ୍ ଇଜ୍ ବର୍ଣ୍ଣ ଫ୍ରି କିନ୍ତୁ ଶୃଙ୍ଖଳିତ ସବୁଠି ! ବିବେକଶୀଳ ଏବଂ ନ୍ୟାୟ ଅନ୍ୟାୟର ଜ୍ଞାତା ମନୁଷ୍ୟ ! ଲକ୍‌ଙ୍କ ଯୁକ୍ତିକୁ କତୁରୀରେ କାଟିଛି ରଷୋ ! ରାଜ୍ୟ ବ୍ୟତୀତ ପରୀକ୍ଷିତ ଗୋଟିଏ ମକ୍ଷି ! ଅଧିକାର, କର୍ତ୍ତବ୍ୟପରାୟଣତା, ସ୍ୱତନ୍ତ୍ରତା, ଆତ୍ମୋତ୍‌ଥାନ, ସଂପତ୍ତି, ନୈତିକତା ଓ ନ୍ୟାୟ ଅନ୍ୟାୟ ଜ୍ଞାନ ରାଜ୍ୟ ଦ୍ୱାରା ହିଁ ସମ୍ଭବ ! ସବୁର ମୂଳ ରାଜ୍ୟ ! ରାଜ୍ୟ !! ରାଜ୍ୟ ?

ମୈଥୁନରତ ଧେନୁ ଓ ବୃଷଭଟିକୁ ନିଷ୍ଠୁର ଲୋକଟି ଦେଲା ଏକ ପାହାର !

ଅର୍ଦ୍ଧମୈଥୁନା ଅସନ୍ତୁଷ୍ଟା ସୁରଭି ପ୍ରାଣବିକଳରେ ଧାଉଁଛି, ତା' ପଛେ ପଛେ ବୃଷଭ ! ପିଠିରେ ତା' ବସିଛି ପାହାର ପରେ ପାହାର ! ଓଠସାରା ଫେନ ଓ ଲାଳ ଜର୍ଜର ! ଦୀର୍ଘଦେହୀ ଧାବମାନ ବୃଷଭ ଭୟରେ ଆତୁର ! ଉତ୍‌ଥିତ ଚିତ୍କାର ଶୋଷି ନେଲାଣି ତା' ଜଙ୍ଘ ତଳେ ଆନ୍ଦୋଳିତ ପୌରୁଷର ଅହଂକାର ! ନଂପୁସକ ପରି ଧାଉଁଛି ସେ, ଧାଉଁ !

ବିଚ୍ ରାସ୍ତା ଉପରେ ସ୍ପଷ୍ଟ ଦିବାଲୋକରେ ଯୁବତୀ ଛାତ୍ରୀର ବସ୍ତ୍ର ଚିରିଲାଣି କା' ହାତର


Source: Author, Digitized by PPRACHIN, SOA

ଭୁଜାଲି ! ଲୋକସବୁ ଅନ୍ଧ ! ପ୍ରାଣବିକଳରେ ଧେନୁପରି ଧାଉଁଛି ଉଲଗ୍ନା ! ଆନ୍ଦୋଳିତ ତା' କଟି ଓ ସ୍ତିଚର ସ୍ୱାଦ ଆସ୍ୱାଦନରତ କେତେକ ନଂପୁଷ୍ଣ ! ଅଥଚ ରିକ୍ସାବାଲା ଜଣେ ତା' ଆଡ଼କୁ ଫିଙ୍ଗି ଦେଉଛି ନିଜ ସ୍ୱେଦସିକ୍ତ ଗାମୁଛା ଖଣ୍ଡିକ !

ମା' ଏମାନଙ୍କୁ କ୍ଷମାକର ! ଏମାନେ ଅଜ୍ଞାନ, ଜାଣିନାହାନ୍ତି ସେମାନେ କ'ଣ କରୁଛନ୍ତି ! ଏମାନଙ୍କୁ କ୍ଷମାକର !

ଲାଲ ଯାମାରେ କଟକ-ଭୁବନେଶ୍ୱର ରାସ୍ତାରେ ବସ୍ ଡକାୟତି ଚାଲିଛି ! କିଏ କରୁଛି ? କିଏ କରାଉଛି ? କିଏ ସେମାନେ ? ଅସାମାଜିକ ! ନା ପରୀକ୍ଷିତର ନିଜ ଲୋକ ? କିଏ ଟେଣ୍ଡର ଫିକ୍ସିଂ କରୁଛି ?

ଶାମ୍ୱ,

ଅମ୍ବରୀଷ....

ଆୟକର,

ସେଲ୍ ଟ୍ୟାକ୍ସ ?

ନା' ସ୍ୱୟଂ ଭାଟ୍ ?

ଫରେଷ୍ଟ, ଇରିଗେସନ୍, ପୁଲିସ, ମନ୍ତ୍ରୀ, ଯନ୍ତ୍ରୀ, ପଦାତିକ ? ସେମାନେ କିଏ ଏ ରାଜ୍ୟର ରକ୍ଷକ ! ବସ୍ତ୍ର ଯଦି ଶରୀରର ସୁରକ୍ଷା ନକଲା, ଅନ୍ନ ଯଦି କ୍ଷୁଧା ନିବାରଣ ନକଲା, ପୁତ୍ର ଯଦି ପୁତ୍ ପାର ନକଲା, ଆଲୋକ ଯଦି ଅନ୍ଧାର ଦୂର ନକରି ଦାହ କଲା ଅଙ୍ଗ ? କ'ଣ କରାଯିବ ? କ'ଣ କରାଯିବ ?

ଜବାବ ଦିଅ ପରୀକ୍ଷିତ,

ଜବାବ ଦିଅ !

ନିରୁତ୍ତର ପରୀକ୍ଷିତ ! ବ୍ରାହ୍ମଣ ପୁତ୍ରର ଅଭିଶାପ ନିଅ ! ନିଅ ଅଭିଶାପ.... !

ଆଜଠୁ ସପ୍ତଦିନ ମଧ୍ୟରେ ତମକୁ ଦଂଶିବ ତକ୍ଷକ !! ତମକୁ ଦଂଶିବ ତକ୍ଷକ !



Source: Author, Digitized by PPRACHIN, SOA

# ଧବଳତମ ଅଂଧାର

ଯୀଶୁ କହିଲେ, 'ମୋ ପାଖକୁ ଆସ, ମୁଁ ତୁମକୁ ଦେଖାଇବି ଆଲୋକ' !

ସଦ୍ୟ ଆଇନ୍ ମହାବିଦ୍ୟାଳୟରୁ ପଦାକୁ ବାହାରିଥିବା ଛାତ୍ର ପ୍ରଶ୍ନକଲା - ଭଗବାନଙ୍କୁ ଦେଖିଛନ୍ତି ଆପଣ, ଦେଖେଇ ପାରିବେ ମୋତେ ?

ନିଶ୍ଚୟ; ମୁଁ ଭଗବାନଙ୍କୁ ଦେଖେଇଦେବି ! ମୁଁ ଯଦି ତାଙ୍କୁ ଦେଖିନଥାନ୍ତି ତତେ କେମିତି ଦେଖେଇବି ବୋଲି କହିଥାନ୍ତି ! ଆ' ମୋ' ପାଖରେ ବସ୍ !

ସଂଦେହ ବଦଳୁଛି ! ବିସ୍ମୟ ବିଶ୍ୱାସର ପରିଧାନ ପିନ୍ଧୁଛି ! ପ୍ୟାଣ୍ଟ, କୋଟ୍ ଟାଇ, ସାର୍ଟ ସବୁ ହୋଇଯାଉଛି ବିଶ୍ୱାସ ରଙ୍ଗ ! ପବନରେ ପୂରିଛି ତୁଳସୀର ମହମହ ଗନ୍ଧ ! ଗୁରୁ ସନ୍ନ୍ୟାସୀ ଶ୍ରୀମୁଖ ସାରା ବେଳକୁବେଳ ଭର୍ତ୍ତି ହେବାରେ ଲାଗିଛି ପ୍ରାତଃ ସୂର୍ଯ୍ୟର ମୟୂଖ ! ଶିଷ୍ୟ ବିସ୍ମରି ଗଲାଣି ତୁଳସୀର ମହକରେ ନିଜ ଆଇନ୍ ଡିଗ୍ରୀର ଗୁରୁତ୍ୱ ! ଆୟ ଓ ଅହଙ୍କାର। ! ଲଙ୍ଗଳା ଶିଶୁ ଏକ ଏବେ ଖେଳୁଛି ତା' ବୃଦ୍ଧବାବାଙ୍କ ପଦତଳେ ! ଉପମନ୍ୟୁ ଚାଟାର୍ଜୀର 'ଶେଷବୋଝ' ? କାଇଁ, ଆଉ କାଇଁ ?

ଏକପାଦରେ ଦଣ୍ଡାୟମାନ ବୃଷଭ ପୁତ୍ରହରା ଶୋକତୁରା ଧେନୁଟିକୁ ନିଜର ଫେନ ଭିଜା ଓଷ୍ଠ ଓ ଜିହ୍ୱାରେ ଦେଲା ଟିକେ ଆଶ୍ୱାସନାର ସ୍ପର୍ଶ ! ଚର୍ ଚର୍ ! ଚାଟୁଛି ତା' ନିଗିଡ଼ା ଲୋତକ ! ବହମାନ ଦୁଃଖ !

ବେଙ୍ଗ କହେ ବେଙ୍ଗୁଲିଲୋ ପୃଥ୍ୱୀ ଘଡ଼ି ଘଡ଼ିକେ ନୂଆ ! ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ କ'ଣ ଆଉ କରିବା ? ନ ସହିବା ? ଚକେ ଗଲେ ବାରହାତ !

ପାହାଡ଼ ଉପରକୁ ପଥର ଉଠାଉଥିବା ସିସିଫସ୍....

ଟପ୍ ଟପ୍ ବିନ୍ଦୁ ସ୍ୱେଦ ନିଗିଡ଼ି ଭାରି ଛାତିକୁ କରିଦେଲା ହାଲୁକା ! ଆଖି ଦୁଇଟିରେ ଢଳ ଢଳ ହୋଇ ଆଙ୍କି ହେଉଥିଲା ଭାଷା ! ଆସ, ମୋ ପାଖକୁ ଆସ, ମୁଁ ତୁମକୁ ଦେଖାଇବି ଅଂଧାର !

ଅଂଧାର ଫୁଲପରି କୋମଳ ! ସ୍ତନ ପରି ଆକର୍ଷଣୀୟ ଓ ଚିକ୍କଣ ! ଦେଖାଇବି ଆସ, ମୁଁ ତୁମକୁ ଦେଖାଇବି ଅଂଧାର !!



Source: Author, Digitized by PPRACHIN, SOA

ଅନେକଥର ଇରାବତୀ ଚୋଲୀ ଭିତରେ ପାପୁଲି ଭରିକରି ଅଂଧାରକୁ ଖୋଜିଛି ପରୀକ୍ଷିତ ! କିନ୍ତୁ ପାଇଛି 'ଇଣ୍ଡିଆନ ଅଗଷ୍ଟ' ! ଆଙ୍ଗୁଠି ତମାମ ତାର ବୋଲି ହୋଇ ଯାଇଚି ଇଂଗ୍ଲିସ୍ ! ମାତ୍ର ଭାରତର ରାଷ୍ଟ୍ରଭାଷା ସଂସ୍କୃତ ନୁହେଁ, ହିନ୍ଦୀ !

ବାବା ସେହଗଲ ଦେଖୁଥିବା ଲୋକ ନ ପଢ଼ି ପାରନ୍ତି ଉପନ୍ୟାସ ! ଉପନ୍ୟାସ ପଢୁଥିବା ପାଠକ ପୂଜାଭଙ୍ଗ ଚୁମ୍ବନ ପାଇଲେ ବି ଲାଗିବ ଚିଆଁ ! ସେମାନଙ୍କ ପାଇଁ ଚୁମ୍ବନ ଉପନ୍ୟାସେ, ନୂଆ ନୂଆ !

.... 'ସାର୍ଟାନିକ୍ ଭର୍ସେସ୍', ଦି ସୁଇଟେବଲ୍ ବୟ', ଚୋଲି କେ ପିଛେ.... 'ଅନସଟର୍ଣ୍ଣ ଲିଆସନ୍', ଲଙ୍ଗୁଳୀ ମଠର ଶୀତା 'ମାଡୋନା'ଙ୍କ ନିଜ ଦେହ କଥା ଓ ବଂଗୀୟା ପରିତ୍ୟକ୍ତାର ଚମ ଉଷୁମ୍‌କରା 'ଲଜ୍ଜା !' ମଜା, କି ମଜା !! ସାରା ବର୍ଷ ବର୍ଷା ଓ ମଳୟ, .... ଚୁପି ଚୁପି ହର୍ଷ ଓ ପ୍ରଣୟ ! ରବିନା ଟଣ୍ଡନକୁ ପାସଙ୍ଗ କରି ବଳେଇଗଲା ମମତା କୁଲକର୍ଣ୍ଣି ! ତା' ଚେନ୍ ଫିଟା ଜିନ୍ ତଳେ ... ବିକ୍ରି ନିଷେଧ ଆସ୍ଥା ଦେଶୀମଦ !! ତିଲୁଭାଇ, ଜିତ୍ ତୁମର ! ପ୍ରତି ଗାଁରେ ଖୋଲିଚାଲ ! ଖୋଲିଚାଲ !

ଚକେ ଗଲେ ବାରହାତେ ! ବାର ବର୍ଷରେ ଯୁଗେ ! ନବକଳେବର ! ଭିଡ଼ଭାଡ଼, ଲୋକ ଯାମ୍, ଇଏ କ'ଣ ନାଗାର୍ଜ୍ଜୁନ ବେଶ ? ରାଜା, ମନ୍ତ୍ରୀ, ଅମାତ୍ୟ, ସେନାପତି ... ସମସ୍ତଙ୍କ ହାତରେ କାତ ! କାଠ ? କଳି ନଈ ପାରି ହେବ ? ନାଗାର୍ଜ୍ଜୁନ ହୋ ! ତୁମ ଏ 'ଅଗ୍ନି' ପରୀକ୍ଷା ବନ୍ଦ ରଖ ! ବନ୍ଦରଖ ! ଗାଟ୍ ଚୁକ୍ତିନାମା ସ୍ୱାକ୍ଷର ହେବ ! ଅନ୍ତତଃ ଆଉ ଅଳ୍ପ ଦିନ !!

ସେତୁବନ୍ଧ ସାମ୍ନା ଧାଡ଼ିର ସଜା ପଥର ନିଉଜ୍ ତିଆରି କରେନା, ନିଉଜ୍ ତିଆରି କରେ ନଳ, ନୀଳ ଓ ଶିବସରାସନ ! ମହାଭାରତ ତିଆରି କରେ ସ୍ୱପ୍ନ ଓ ସଂକଳ୍ପ ନୁହେଁ, ଝିମିଟି ଖେଳ ! ଭଣ୍ଡାରିଆକୁ ମାର୍ ମାର୍ ! ଲଖଣ ରଥକୁ ? ନାହାକଟା ଏକଘରିଆ ! ଧୋବା ଗଛକଟା କାଳେସୀ ? ଚମ୍ପାଫୁଲ ମନ୍ତୁରା ଔଷଧ କିଡ୍‌ନି ଡ୍ୟାମେଜ୍ ଭଲ କରିଦେବ ! ନିର୍ବାଣମୁଖୀ ଦୀପ ଜଳୁଥିବ ବୋଲି ଗୁରୁଶିଷ୍ୟ ଟାଣ ଦକ୍ଷିଣା, ଲୁଗା, ନଡ଼ିଆ ଓ ପଇତା ଦାବିରେ ଚଲାଇଲେ ଚଣ୍ଡୀ !

ବୁଝି ପାରୁନାହାନ୍ତି ନା କିଛି ?

ମଣିଷକୁ କେତେବେଳେ କିଏ କେଉଁଠି ବୁଝିପାରିଛି କି ?



Source: Author, Digitized by PPRACHIN, SOA

ମଣିଷ ଅବୁଝା ! ମଣିଷ ଅର୍ଥହୀନ ଏକ ଆବେଗ ! ଏକ ବେଗବାନ ନିରୁତ୍ତର ପ୍ରଶ୍ନ ! ପରୀକ୍ଷିତ ଗ୍ରୀବାଟେକି କଲା ନିରୀକ୍ଷଣ ! ଷଣ୍ଢ କହୁଚି... ? ଶୁକ ? ଦୁଇରୁ ଦ୍ୱାଦଶ !! ଏକ ମାଇନସ୍, ଦ୍ୱୟ ନାସ୍ତି ! ତ୍ରୟଗୁଣ, ଚତୁର୍ବେଦ ? ଆସ୍ତି କଣ୍ଠିତ୍ ବାକ୍ ବିଶେଷ ! ମମତା କୁଲକର୍ଣ୍ଣି ଦେହର ଭୂଗୋଳ ! ... ଇଁା କ୍ରିଷ୍ଟୋଁଫ ଏବେ ଫିଲୋସୋଫିକାଲ୍ ! ସିଂହେଙ୍କ 'ପ୍ଲେବୟେ' ଧାଡ଼ିଗୁଡ଼ିକ ଗୋଟାଏ ଗୋଟାଏ ମିଠାଫଳ !

ଜାଂଗଳିକ ଦେଇଯାଇଛି ବୋଲମନା କୌତୁକିଆ ସ୍ୱର୍ଣ୍ଣନାଗ ଶବର ସର୍ଦ୍ଦାର ଝିଅ ସୁନ୍ଦରୀ ମଲ୍ଲିକାକୁ ! ଅଭିଶପ୍ତ ସ୍ୱର୍ଣ୍ଣନାଗ ତା' ଆଙ୍ଗୁଳି ନିର୍ଦ୍ଦେଶରେ ଖେଳୁଛି, ବୁଲୁଚି, ନାଚୁଛି ଓ ହସି ହସି ଗଡ଼ିଯାଉଛି ସାରା ଧୂଳି ଶେଯ ! ଆହାର କରୁଛି ଦୁଗ୍ଧ ଓ ରଂଭାଫଳ ! ବେଳକୁବେଳ ଲମ୍ବିଯାଉଛି ଛାୟାଲୋକର ଖେଳ ! ସେଦିନ... ସ୍ୱର୍ଣ୍ଣନାଗ ଶୋଇଛି ତା' ଛାତି ଉପରେ ମୁଣ୍ଡ ଥୋଇ !

ଦୁଇପଟେ ଦୁଇଟା ଉଷୁମ୍ ପାହାଡ଼ ! ତଳେ ଏକ ବିଳଂବିତ ଦୀର୍ଘ ଅନ୍ତରୀପ ! ସାରା ଅନ୍ତରୀପ ଫୁଲଶେଯ ! ଫୁଲ ଶେଯସାରା ଗଡ଼ିଯାଉଛି ମୁଗ୍ଧ ନାଗ ! ଆଘ୍ରାଣ କରୁଛି ମନ୍ତ୍ର ଓ ମଳୟ ! ହଠାତ୍ କେଇଥର କଂପି ଉଠିଲା ମିଳନ ତୃପ୍ତ ସ୍ଖଳିତ ଥରଥର ଦେହ ! ଖସିପଡ଼ିଲା ମଣି ଓ ମୁକୁଟ !

ମଲ୍ଲିକା ଛାତିରେ ମୁହଁ ଗୁଂଜିଛି ଇଏ କିଏ ? ନାହିଁ ସ୍ୱର୍ଣ୍ଣନାଗ ?? ଏ ପୁରୁଷ କୃଷ୍ଣ ନା ଅର୍ଜୁନ.... ୟା' ଆଲ୍‌ହା !

ହ୍ୱାଟ୍ ଏ ବିୟୁଟିଫୁଲ୍ ବୟେ ! ନିଶ୍ଚୟ ଇଏ ଚନ୍ଦ୍ର; ଏ ଫର୍ଟନାଇଟ୍ ଓଲ୍‌ଡ ? ବାହୁ ଦି'ଟା ଗୋଲଗୋଲ, ଛାତିଟା ପ୍ରଶସ୍ତ ! କି ଚିକ୍‌କଣ ମାଂସ !! ମଲ୍ଲିକା ! ମୁଁ ତୁମ ପ୍ରଣୟ ଓ ପରିଣୟ ପ୍ରାର୍ଥି ! ମୋତେ କ୍ଷମା କରିଚଟି ? ଦୋଷି ଦୋଷି ନତ ଦୁଇଟି ଆଖି ! ଅପରାଧ ଓ ଦଣ୍ଡ ସ୍ୱୀକାରୁଛି !

ଭୁଜ ମୃଣାଳରେ ବାନ୍ଧିଦେଇ କୁଚକୁଂତରେ ତା' ବକ୍ଷ ପୀଡ଼ନ କରିଯିବ କି !

କତୁରୀରେ ଚିରି ହୋଇଗଲା ଦୁଇଟି କଲିଜା !

ଶବ୍ଦର ଅଛି ଭାର, ଧ୍ୱନି ଓ ଚେହେରା ! କଳାର ଉଦ୍ଦେଶ୍ୟ ସୃଷ୍ଟି କରିବ ସଂପର୍କ ! ଲେଖକ କହିବନି କିଛି, କହିବ ଚରିତ୍ର - ଏସ୍‌ଥେଟିକ୍‌ସ୍ ! ଗନ୍ଧ ଓ ମାନବିକତାର ଅନୁଭୂତି ସ୍ୱର୍ଣ୍ଣନାଗପରି ହୋଇ ରୂପାନ୍ତରିତ ହୁଏ ଆର୍ଟ ! ହୁଏ ଅର୍ଜୁନ !



Source: Author, Digitized by PPRACHIN, SOA

ପରୀକ୍ଷିତ ଙ୍କାଂଗଳିକର ପେଟିକାରେ ବାନ୍ଧିହୋଇ ପଡ଼ିଥିବା ସ୍ୱର୍ଣ୍ଣନାଗ ଅର୍ଜ୍ଜୁନର ପୌତ୍ର ! ତା' ଆଖିରେ ବି କ୍ଷମାଭିକ୍ଷାର ଦାଗ !

ଧନୁଗୁଣମୁକ୍ତ ଶବ୍ଦଭେଦୀ ବାଣ ତୂଣୀରକୁ ଲେଉଟିବା ସଂପୂର୍ଣ୍ଣ ଅସଂଭବ ! ଓଠରୁ ଖସି ଯାଇଥିବା ଶବ୍ଦ.... !

ଋଷିପୁତ୍ର ଶ୍ରବଣ ! କ୍ଷମାକର, କ୍ଷମାକର !

ଶୃଙ୍ଗୀ ଋଷିପୁତ୍ର କୋଷମୁକ୍ତ ତୀକ୍ଷ୍ଣ ଶବ୍ଦ ଅସ୍ତ୍ର ଲକ୍ଷ୍ୟ ସାଧନ ନକରି ହୁଏନା କୋଷବିଦ୍ଧ ! ପରୀକ୍ଷିତ ! ବ୍ୟକ୍ତି ଜନ୍ମ ହେଲେ ତାକୁ ମୃତ୍ୟୁ ପର୍ଯ୍ୟନ୍ତ ଚାଲିଚାଲି ଯିବାକୁ ହିଁ ହେବ - ସ୍ରଷ୍ଟା ନୀତି ଅନିବାର୍ଯ୍ୟ ! ଝଲମଲ ରୂପ ଭୋଗ ଭିତରେ ମୃତ୍ୟୁଠି ପହଞ୍ଚିବା ଜନ୍ମର ଅର୍ଥ ! ଏବେ ସପ୍ତଦିନ ମଧ୍ୟରେ ପହଂଚିବାକୁ ହେବ ! ହୁଏତ ରହିଥାନ୍ତ ଆଉ କିଛି ଦିନ ମାୟାମୁଗ୍ଧ, ତା' ପରେ ତ ନିଶ୍ଚେ ପିଇଥାନ୍ତ ଏଇ ମୃତ୍ୟୁର ମଦ୍ୟ ?

ଜନ୍ମର ଷ୍ଟେସନରୁ ଜୀବନର ଟ୍ରେନ୍ ବାହାରେ ଭ୍ରମି ଭ୍ରମି ପହଂଚେ ମୃତ୍ୟୁପୁରୀଠି ! ଅନିଚ୍ଛା ସତ୍ତ୍ୱେ ବି ଯାତ୍ରୀ ଅବତରଣ କରିବାକୁ ବାଧ୍ୟ ସେଇଠି ! ଟ୍ରେନ୍ ରେଷ୍ଟ୍ ସେଡ୍‌କୁ ଯିବ ! ଇଂଜିନ୍ ବଦଳିବ ! ବଗି ସଫା ହେବ ! ଟାଙ୍କି ଭର୍ତ୍ତି ହେବ ! ଆସନ୍ତା ଯାତ୍ରା ପାଇଁ ପୁଣି ପ୍ରସ୍ତୁତି ! ମଣିଷ ଜନ୍ମ ହୋଇଛି କେବଳ ଲଭିବାକୁ ମୃତ୍ୟୁ ! ମୃତ୍ୟୁରେ ହିଁ ଜୀବନର ପୂର୍ଣ୍ଣଚ୍ଛେଦ ! ସବୁ ସ୍ୱପ୍ନ / ଅହଂକାର / ବୈଷମ୍ୟର ପୂର୍ଣ୍ଣତା !

ଜନ୍ମ ଅର୍ଥ ମୃତ୍ୟୁ ! ଯାହାର ଜନ୍ମ ନାହିଁ ତାର ମୃତ୍ୟୁ ନାହିଁ ! ଜନ୍ମ ଓ ମୃତ୍ୟୁ ମଧ୍ୟରେ ଯେଉଁ ଚାଖଣ୍ଡେ ଗ୍ୟାପ୍ ତା' ନାଁ ଭଲ ପାଇବା ! ଭୁଜଙ୍ଗ ବିଷଠୁ ଭୟାନକ ଭଲ ପାଇବାର ସେଇ ଗ୍ୟାପ୍‌ଟକ !

ସୁନା ଖଣିର ଖାତ ! ସୁନାଖଣି ଖାତ ଭିତରେ ଏବେ ପରୀକ୍ଷିତ ! ଯେଉଁ ଆଡ଼କୁ ଦୃଷ୍ଟି ପହଁରିଯାଏ ସବୁ ଅଶୁଦ୍ଧ ଓ ଶୁଦ୍ଧ ସ୍ୱର୍ଣ୍ଣର ଛାୟା - ଆଲୋକ !

ପରୀକ୍ଷିତ ଘୂରୁଛି ଖାତସାରା ! କୂପ ଭିତରେ ଖସିପଡ଼ିଥିବା ସ୍ଥଳବେଙ୍ଗ ! ଘୂରି ଘୂରି ଥକିଯାଏ, ଡେଣା ଅବଶ, ପାଦ ଥମିଯାଏ ଓ ଥୟ ହୋଇଯାଏ !

ନିରଞ୍ଜନା କୂଳେ ବୋଧିଦ୍ରୁମ ତଳେ ଥୟ ହୋଇ ବସିପଡ଼ିଲା ସେ !

କେହି ଜଣେ ଚିତ୍କାର କଲା - ଆନାସ୍‌ଥେସିଆ .... ଆନାସ୍‌ଥେସିଆ ଦିଅ ! ଅପରେସନ୍ ରେଡି ! ଅପରେସନ୍ ଥିଏଟର ବାହାରେ ଜଳି ଉଠିଛି ଲାଇଟ୍ ! ବ୍ଲୁ ଲାଇଟ୍ !



Source: Author, Digitized by PPRACHIN, SOA

ଶବ୍ଦର ଅନ୍ୟ ନାମ ଯନ୍ତ୍ରଣା କିନ୍ତୁ ଯନ୍ତ୍ରଣାର ଅନ୍ୟ ନାମ ଶବ୍ଦ ନୁହେଁ, ଜୀବନ ! ମଣିଷକୁ ଗଢ଼ିଦିଏ ସାହିତ୍ୟ, କରିଦିଏ ମଣିଷ ! ମାନବିକତା ହୋଇଯାଏ ସାର୍ଥକ !

ମୁକ୍ତି + ତୃପ୍ତି = କଳାର ଲକ୍ଷ୍ୟ !

ଦେହ କାଟି ଅସ୍ଥି ଯଦି ନ ଦେବ ଆର୍ଟିଷ୍ଟ ଆହୁରି ଭୟଙ୍କର ହେବ ସଂସାରର ସ୍ଥିତି ! ପ୍ରଳୟ ଓ ପବନ ପୃଥିବୀକୁ କରିବ କବର ସ୍ଥାନ ! ରହିବେନି ମଣିଷ ! ଖାଲି ରାକ୍ଷସ ଆଉ ରାକ୍ଷସ ! ରାକ୍ଷସ.... !

ଶିଥିଳ ମାଟିର ଜରାୟୁରୁ ଅଙ୍କୁରୋଦ୍‌ଗମ କାଢ଼ି ଆଣେ ଆର୍ଟ ! ଆର୍ଟିଷ୍ଟର ଶବ୍ଦ ବୋଝେଇ ହାର୍ଟ ! ବର୍ଣ୍ଣ ଭର୍ତ୍ତି ମନ ! ଅଗ୍ନା ଅଗ୍ନି ବନ !

ଜୀବନର କାଳ୍ପନିକ ମୂର୍ତ୍ତି, ମାତ୍ର ଦୁଇଟି ଭାବ ରହିଛି ଯେଉଁଠି : ଅତୀତ ପୂର୍ଣ୍ଣ କୁସୁମିତ ହୁଏ କିମ୍ବା ବିରୋଧ ହୁଏ ! ଏଇ ଦୁଇ ଭାବ ମଝିରେ ଲମ୍ଫି ଲମ୍ଫି ଜୀବନ ଫର୍ଦ୍ଦ ବୁଜି ହୋଇଯାଏ ! ଅତୀତ ଜଳୁଛି ! ଜଳିଗଲା ପରେ ନିର୍ବାପିତ ଶିଖା ଛାଡ଼ିଦେଇ ଯିବ କଳା ! ଛାଡ଼ିଦେଇ ଯିବ ପାଉଁଶ ! ଛାଡ଼ି ଦେଇଯିବ ନିଶବ୍ଦ ନକ୍‌ସା ! ଈଶ୍ୱରତ୍ୱ ହେବ ପ୍ରାପ୍ତ ? ଅଧୋପତନ ନା ଉତ୍‌ଥାନ ? କ'ଣ ଲାଭ କରିବ ପରୀକ୍ଷିତ ? ମୁକ୍ତି ?

ବସା ଅନ୍ୱେଷୀ ପକ୍ଷୀ ?

ମଣିଷର ସୌକୁମାର୍ଯ୍ୟତମ କୃତୀ ବହନ କରେ ଯନ୍ତ୍ରଣାର ନଛୋଡ଼ବନ୍ଧା ଦାଗ ! ସେଠି ହେବ କି ସୁଖର ଗପ ? ଯାହା ତାକୁ ତିଆରି କରିଛି ତାହା ତାକୁ ନଷ୍ଟ କରୁଛି ! ଜନ୍ମର ଗପ ଶୁଣି ବିରକ୍ତ ଆଧୁନିକ ମଣିଷ ! ଡାଇବେଟିସ ରୋଗୀ କେତେ ଆଉ ସଂସାରର ଗୋଲଆଳୁରେ ରହିବ ଆସକ୍ତ ? ପବନରେ ନୃତ୍ୟରତ ଭାସମାନ ପକ୍ଷୀ ! ଯୌବନରେ ନିଜ ଭିତରେ ତୁମେ ଜଡ଼ି ରହିଥିଲ ! ତୁମ ଚାଲି ଥିଲା ଧବଳତମ ! ଯେତେବେଳେ ତୁମେ ହୋଇଗଲ ବୃଦ୍ଧ, ଶାଖାପରି ପ୍ରସାରି ଦେଇଛ ସାମନାକୁ ଦୁଇ ହସ୍ତ ! ଜୀବନ କ'ଣ ନୁହେଁ ପବିତ୍ରତମ ପ୍ରଭୁଙ୍କ କରୁଣାର ଆଲୋକ ?

ଜୀବନ ଈଶ୍ୱରତ୍ୱ ହେବ ପ୍ରାପ୍ତ ? ନା' ଦେହ ! ପଞ୍ଚଭୂତର ଦାନ ଓ ଅବଦାନ !!

ଗୋଲ ଗୋଲ ପିଚା ଉପରେ ଦି'ଟା ଚାର୍ମିଂ ଜଙ୍ଘର ଚାପ !

ଆଖି ଭିତରେ ବୁଲୁଚି ବନାଚି ! ନାଚୁଛି ଭୟାନକ ସେନ୍‌ସେସନ୍ ! କୀଟ ଚାରିପଟ


Source: Author, Digitized by PPRACHIN, SOA

ଘେରିଯାଇଛି ବୁଢ଼ିଆଣୀ ଜାଲ ! ସିଏ କାହାକୁ କରିବ ଅନୁସରଣ ? ତା' ସାମ୍ନାରେ କୌତୁହଳ !

ଠିଆ ହୋଇଥିବା, ଧୀରେ ଧୀରେ ଓହ୍ଲେଇ ଆସୁଛି ଦିନ ! ପାହାଚ ପରେ ପାହାଚ ଟପି ଆଗେଇ ଆସୁଛି ତକ୍ଷକ ! ନିଃଶବ୍ଦ ଶିଢ଼ିରେ ଏଇ ଶବ୍ଦ .... ତା' ଜୋତାର ଠପ୍ ଠପ୍ !!

ଅରଣ୍ୟରେ ମାଂସ ଗଂଧରେ ଆକୃଷ୍ଟ ଗୋଟାଏ କ୍ଷୁଧିତ ଶାର୍ଦ୍ଦୁଳ ନିର୍ଭୟରେ ପତ୍ରର ମର୍ମର ଟପି ଆସୁଛି ଆଗେଇ ! ଦୀର୍ଘ ଏକ ଆଁ'ର କବାଟ ଖୋଲି ଘଡ଼ିଆଳ ପହଁରି ଆସୁଛି ଶିକାର ଦିଗକୁ ! ଚିଠି ବୁଜି ହୋଇଯିବ ଲଫାପା ଭିତରେ ?

ପରୀକ୍ଷିତ ନଇଁଯାଅ ! ନଇଁଗଲ ! ରାଜାମାନେ କୁଆଡ଼େ ମୁଣ୍ଡ ନୁଆନ୍ତି ନାହିଁ ! ନଇଁଗଲେ ଲହରୀ ଡେଇଁଯାଏ ! ଲହରୀ ଡେଇଁଯିବ ?

ଏକ ଅଧଡଜନ ଧକ୍କା ! ନୈସର୍ଗିକ ପ୍ରହେଳିକା ! ଅନୁଦାର ଐଶ୍ୱର୍ଯ୍ୟଶାଳୀ ସୁଶ୍ରାବ୍ୟ ଗୋଟିଏ ଲୟ ! ସ୍ନେହଶୀଳ ନୁହେଁ ଶ୍ଳୈଷ୍ମିକ ଗୋଟିଏ ବିଲୟ !

ମୌସୁମୀବାୟୁ ବିକଟାଳ ସମୁଦ୍ରର ଏକ କେମିକାଲ ଆକ୍ସନ ?

ତା' ପରେ ବର୍ଷାର ପ୍ରଥମ ଠୋପା; କି ମିଠା !!



Source: Author, Digitized by PPRACHIN, SOA

# ଦୁର୍ଜ୍ଞେୟ ଅନୁଭୂତି

ପରୀକ୍ଷିତ ଚକ୍ଷୁରେ ଦୁର୍ଜ୍ଞେୟ ଅନୁଭୂତି ! ବେପରୱା ପରସ୍ପର କ୍ରିୟା ବିନିମୟ ବ୍ୟୁତ୍କ୍ରମ ! ସେଲ୍ଫ୍ ସାଟିସ୍‌ଫେକ୍ସନ ! ନବ ବଳପ୍ରଦ ପ୍ରତ୍ୟଭିଯୋଗ ! ପ୍ରଦୀପ୍ତ ଔଦାର୍ଯ୍ୟ ! କ୍ରିୟାଶୀଳ ପ୍ରତି ପ୍ରବାହ ! ପରିତାପ ଆସୁନାହିଁ ଆସୁଛି ପ୍ରତିଷ୍ଠାର ପ୍ରାଭ୍ୟାସ ! ପ୍ରତ୍ୟାବର୍ତ୍ତନର ପଞ୍ଜିଭୁକ୍ତ ପଲ୍ଲବ !

ପ୍ରତ୍ୟୁକ୍ତିପରି ଅବଶିଷ୍ଟ ଆୟୁଷ ଭାରି ତୃପ୍ତିକର; ତା' ତୃଷ୍ଣାର ଚାଲିଛି ଅସ୍ତ୍ରୋପଚାର ! ଭାସେକ୍‌ଟୋମି ଅବଶିଷ୍ଟ ପୃଥିବୀର ଦରକାର ନାହିଁ ପାର୍ଶ୍ୱ ଟିପ୍‌ପଣୀ ! ବହୁତ ହୋଇଗଲା ! ବହୁତ ହୋଇଗଲା ବୋର୍...

ଖୋଦିତ ମୂର୍ତ୍ତି ପ୍ରାପ୍ୟ ଦିଏ ଖ୍ୟାତି ! ଲମ୍ଫୋଦ୍ୟତ ମୃତ୍ୟୁ ଅନୁରୂପ କ'ଣ କରିବ ପ୍ରତ୍ୟର୍ପଣ ? ପରୀକ୍ଷିତ ଆରମ୍ଭ କରିଛି ମୌନ ପରିଶୋଧ ! ସମାଦରଣୀୟ ବିଶ୍ରାମ !

ମୋତେ ଦିଅ ଗୋଟିଏ ଠା'ର ଠିକଣା ! ତୃଷ୍ଣୀମ୍ଭାବ ଡାକବଙ୍ଗଳା ! ଭୟ ନିବୃତ୍ତ ଆଲୋକର ବିନୟପୂର୍ଣ୍ଣ ବଖରା ! ଆବର୍ତ୍ତିତ ରାତ୍ରୀ ଓ ଦିବସର ନଥିବ ପଂଜୀକୃତ ପଶ୍ଚାଦ୍‌ଦୃଷ୍ଟି ! ଆଗ୍ନେୟାସ୍ତ୍ର ପରି ପ୍ରତ୍ୟାର୍ପିତ ମୁଁ ହୋଇଯିବି ଯାଜକୀୟ ଶ୍ୱେତ ଅଭିସନ୍ଧି !

ର୍ୟାବୋ ଊନବିଂଶ ବର୍ଷ ବୟସ୍କ, ଆଉ ଲେଖି ନଥିଲେ କବିତା, ତ୍ୟାଗ କଲେ କବିତ୍ୱ ! ଯୀଶୁ ମାତ୍ର ତେତ୍ରିଂଶଟି ବର୍ଷ ବୟସରେ ଓହଳିଥିଲେ କ୍ରୁଶ ! ଜ୍ୟାକ୍ କେନେଡ଼ି ହେଲେ ଗୁଳିବିଦ୍ଧ, ବୟସ ମାତ୍ର ଛୟାଳିଶ ବର୍ଷ ! ଆଉ ପରୀକ୍ଷିତ ... ଏବେ ମଧ୍ୟାହ୍ନ, ମଥାନ ଶୀର୍ଷରୁ ତଳକୁ ଓହ୍ଲାଉଛି ସୂର୍ଯ୍ୟ ! ପୁତ୍ର ଜନ୍ମେଜୟ ... ପାଇଲାଣି ସରକାରୀ ଚାକିରୀ ! ବଂଗଳା ଓ ଗାଡ଼ି ! ପ୍ରଚୁର ଉପୁରି ! ଗର୍ଭବତୀ ଅତୀତ ଆଖିରେ ଏବେ ଆଉ ନାହିଁ ତା' ପାଇଁ ଅଶ୍ଳୀଳ ଇଂଗିତ ! ସିଏ ଜାଣିଛି ସାରା ରାତ୍ରିର ଭୂଗୋଳ, ଗଣିତ ଓ ଜ୍ୟୋତିଷ ! ଶୁଆପରି କେତେ ନ ଘୋଷିଛି କୃଷ୍ଣ ଓ କାମସୂତ୍ର ! ଫର୍ଦ୍ଦ ଆରମ୍ଭରେ କେତେ ଖଜୁରାହୋ ! ବହିସାରା ଅନେକ କୋଣାର୍କ ଏବଂ ଶେଷ ମଲାଟ ବୁଜିଦେବା ବେଳେ ଇଏ କ'ଣ... ଗରୁଡ଼ ଖମ୍ବ ? ସୌଖୀନ ହାଙ୍ଗାମା ? ସର୍ବସ୍ୱାନ୍ତ ବିଚ୍ଛେଦ ରକ୍ତାଭ ??

ମୃତ୍ୟୁ ଦୁର୍ଭାଷିଣୀ କକ୍‌ସିଓର୍ ନାରୀ ! କାଠହଣା ପକ୍ଷୀ ! ହଳଦିଆ ତାର ପ୍ରତିଟି ପାହାର ! ପାହାଡ଼ପରି ମାଡ଼ି ମାଡ଼ି ପଡୁଛି ସମୟର ବୋବାଳି ! ପ୍ରସବ ବେଦନାରେ କୁହୁଳୁଛି ସମର୍ପଣ ! ବଶୀଭୂତ ପରୀକ୍ଷିତ ଗାଲ ଦୁଇଟି ବେଳକୁବେଳ ହୋଇଆସୁଛି ଲାଲ ! ପକ୍ଷୀଙ୍କ ରାତ୍ରିକାଳୀନ ଆଶ୍ରୟ ସ୍ଥଳପରି ପାପୁଲିର ଗତିରେଖା ଦେଖାଗଲାଣି ଆଶାପ୍ରଦ ଅମାର୍ଜିତ ! ଯିଏ ଆସୁଛି ସିଏ ନୁହେଁ ଉପକଥାର ଲଂପଟ ପୁରୁଷ ! ବରଂ ସେ ଅନାମିକା ଅଙ୍ଗୁଳି ହେଲେ ବି ଗଳ୍ପର ନାୟକ ! ନିଜେ ପରୀକ୍ଷିତ ! ପରୀକ୍ଷିତ ନିଜେ ଆସୁଛି.... !



Source: Author, Digitized by PPRACHIN, SOA

ପରୀକ୍ଷିତ ଆସୁଛି ?

ବଜାଅ ଦୁଂଦୁଭି !

ବଜାଅ ମାଦଳ !

'ପୌଣ୍ଡ୍ରଂ ଦଧ୍ମୌ ମହାଶଙ୍ଖ ଭୀମକର୍ମା ବୃକୋଦରଃ' !

'ମୃତ୍ୟୁଃ ସର୍ବହରଚାହମ୍....ଯୟୋସ୍ମି....ଗୁହ୍ୟନାଂ ଜ୍ଞାନଂ ଜ୍ଞାନବତାମହମ୍ ! ଯୟୋସ୍ମି.....'

ଭାରତୀୟ ସାହିତ୍ୟ- 'ଏ ଷ୍ଟୋରି ଅଫ ମ୍ୟାନ୍‌ସ ଉଇଂ ଅଫ୍ ଓମ୍ୟାନ୍' କିମ୍ବା 'ଦାଟ୍ ଇଜ୍ ନଥିଂ ମୋର୍ ଦେନ୍ ଦି ମେଟିଂ କ୍ରାଇ ଅଫ୍ ଦି ହ୍ୟୁମ୍ୟାନ୍ ମେଲ୍ !'

ସତେରେ ସତ୍ୟକାମ ! ତୋ' ବୋଉ କେତେ କାହା ସେବା ପରିଚର୍ଯ୍ୟା କରି ତତେ ପାଇଛି ! ତୁ ଯାହା ପୁଅ ହ' ନା କାହିଁକି ତୁ ବ୍ରାହ୍ମଣ !

ବୃହସ୍ପତି, ବ୍ୟସ୍ତ ହୁଅନ୍ତୁନି ! ବ୍ରହ୍ମ କ୍ଲେଶରେ ଶୀର୍ଣ୍ଣ ଓ ବିଷର୍ଣ୍ଣ ଆପଣ ! ଆପଣଙ୍କ ସ୍ତ୍ରୀ କା' ଜାଲରେ ଫଶି ଯାଇଥିଲା ? ତାଙ୍କୁ ଆମେ ଶୁଦ୍ଧ ଆଚରଣର ଶପଥ ଦେଇଛୁ ! ବଳବାନ ରାଜାର ରାଜ୍ୟପରି ସତୀତ୍ୱ ତାଙ୍କର ସୁରକ୍ଷିତ !

ଜବାଲାଲୋ, ତୁ ତ କୁନ୍ତୀର ଆଦି ସଂସ୍କରଣ ! ସାବିତ୍ରୀଙ୍କ ବାପା ଅଶ୍ୱପତି ! ତାଙ୍କ ଦୃଢ଼ ପ୍ରତିଶ୍ରୁତି : ମୋ ରାଜ୍ୟରେ କେହି ଲଂପଟ ନାହାନ୍ତି, ସ୍ତ୍ରୀମାନେ ଦୂଷିତା ହେବେ ବା କିମିତି ?

କେଉଁଠୁ ଆସିଚ ତମେ ଏ ସିନେମାହଲକୁ ଏବଂ ଏଠୁ ପୁଣି ଯିବ ଯେଉଁଠିକି ସେଇଟା ପାନ୍ଥନିବାସ ନା' ଗୋଟାଏ ହୋଟେଲ ?

... ମୁଁ ଆଦେଶ ଦେଉଛି ହେ ସୌମ୍ୟ ସାମଶ୍ରବା ! ବିଦେହରାଜା ଜନକଙ୍କ ଏଇ ସହସ୍ର ଧେନୁ ଓ ସେମାନଙ୍କ ଶୃଙ୍ଗରେ ବନ୍ଧା ଯାଇଥିବା ଦଶସହସ୍ର ସ୍ୱର୍ଣ୍ଣମୁଦ୍ରା ମୋ' ଆଶ୍ରମକୁ ନେଇଯାଅ !

ବର୍ଷାରେ ଭିଜିଗଲେ ଯାଜ୍ଞବଲ୍‌କ୍ୟ !

ଯୁଦ୍ଧ

ପ୍ରଥମ ବିଶ୍ୱଯୁଦ୍ଧ !

ଦ୍ୱିତୀୟ ବିଶ୍ୱଯୁଦ୍ଧ ! ... ଭିଏତ୍‌ନାମ !

ଚୀନ୍, ଭାରତ, ପାକ୍-ଭାରତ ଓ ଗଲ୍‌ଫ ୱାର !

କିଏ ଯଜ୍ଞ, ବୁଶ୍ ନା' ସଦ୍ଦାମ ? କିଏ ? ସେମାଲିଆ ! ଚେକ୍ ନା ସ୍ଲୋଭାକିଆ ? କିଏ, ସଂଜୟ ଦତ୍ତ ନା' ମଂଦାକିନୀ.... ରାମ ତେରି ଗଂଗା ମୈଲି ! ଯଜ୍ଞ କିଏ ?



Source: Author, Digitized by PPRACHIN, SOA

କିଏ ?

'ଯଜ୍ଞ ଇତି ପଶବ !'

'ଜୀବା ପଶୟ ଉକ୍ତାଃ !' ସତ୍ୟକାମ, ଆଉ କିଛି ରହିଛି କଥା ?

କାଠ ସରିଗଲେ ? ଜ୍ୱଳନ ଓ ଶିଖା ହୁଏ ସମାପ୍ତ !

ବୃତ୍ତିନାଶ ହେଲେ ଚିତ୍ତ ଆତ୍ମାରେ ହୁଏ ଶାନ୍ତ !

ଆତ୍ମା ଯାହାର ଆଶ୍ରୟ ସ୍ୱରୂପ ସେ ପୁରୁଷ ସର୍ବଭୂତାତ୍ମା !

ମୁଁ ତାଙ୍କୁ ଜାଣେ !

ତାଙ୍କୁ ଯିଏ ଜାଣେ ସେ ଜ୍ଞାନୀ ହୋଇଯାଏ !

ଶାକଲ୍ୟଙ୍କ ତାମ୍ର ଓଷ୍ଠ ଦୁଇରୁ ପଂକ୍ତିଏ ଧ୍ୱନି ବାହାରି ଆସିଲା ଯେମିତି ଶୂନ୍ୟ ନଭତଳେ ଧାଡ଼ିଏ ପକ୍ଷୀ ! ଯାଜ୍ଞବଲ୍କ୍ୟଙ୍କ କଂଠରେ ଅତି ସଂଯତ ସ୍ୱର – 'ଯାହାକୁ ତୁମେ ସର୍ବଭୂତାତ୍ମା କହୁଛ ସେ ଅନ୍ୟ କେହି ନୁହେଁ, ଏଇ କାମମୟ ପୁରୁଷ ! ଆଉ କ'ଣ ତୁମର ପ୍ରଶ୍ନ ? ତା ଦେବତା କିଏ ?

: ସ୍ତ୍ରୀ ! ସ୍ତ୍ରୀ !

ଦୁଇଟି ପାପୁଲିରେ ତାଳି ବାଜେ !

ଦେବଦାସୀର ଶଂଖୁଡ଼ି ଦେହ ଭୋଗରେ ମୋହ ଧର୍ମାଂଧ ରାଜା ଓ କଳାମୁଗ୍ଧ ଅନେକ କବି ! ମୋ' ବଂଧୁ ! ଶକ୍ତିର ଆଘାତରେ ହୁଏ ବିଂଦୁର ସ୍ଫୁରଣ ! ବିଂଦୁର ସ୍ଫୁରଣରୁ କଳାର ଉଦୟ ! 'ସ୍ତ୍ରୀୟଃ ସକଳା ଜଗତ୍‌ସୁ' ! ... ଶୋଇ ପଡ଼ିଛନ୍ତି ବ୍ୟାସ ? ସବୁ ନଦୀ ଏକା ? ନିଜ ମନ ମୁତାବକ ନାୟକ ଜଣେ ଦେଖିବା ମାତ୍ରେ ସେମାନଙ୍କ ଚକ୍ଷୁ ଫୁଲ୍ ହୁଏ ଓଦା ! ଯେତେ ଇଂଧନ ଲାଭ କଲେ ବି ଅଗ୍ନି ହୁଏ ନାହିଁ ଶାନ୍ତ ! ଯେତେ ନଦୀ ପାଇଲେ ବି ତୃଷିତ ସମୁଦ୍ର ଗୁମୁରେ ! ହାୟ... ହା...ୟ.... ! ବୋହି ଯାଉଥିବା ନଦୀ ପାଇଁ ଗୋଟିଏ ଗଡ଼ାଣିର ଦାମ୍, ସାରା ସଂସାରଠୁ ଅଧିକ !

ଡିୟର୍ ଟଲଷ୍ଟୟ, ତୁମେ ଜାଣିଛ ମୁଦ୍ରାର ଭିନ୍ନପାର୍ଶ୍ୱ ?

ସେଇଭିନ୍ନ ପାର୍ଶ୍ୱ ବଖରା ଭିତରେ ଓମ୍ୟାନ୍ ଇଜ୍ ମେରିଲି ଆନ୍ ଇନ୍‌ଷ୍ଟ୍ରୁମେଣ୍ଟ ଅଫ୍ ପ୍ଲେଜର୍ ! ବେଶ୍ୟାଠୁ ନୂଆ, ବିସ୍କୁଟ୍ ପରି ସ୍ୱାଦିଷ୍ଟ 'ଗଷା' ନୀଳ ଆଖି କୁମାରୀ ସର୍ଭେଣ୍ଟ ବାଳିକା ! ପୁଣି ଆଉ ଗୋଟାଏ ଦେହ, ନୂଆ ମାଂସ !! ଅଣସ୍ତରୀ ବର୍ଷ ବୟସରେ 'ଦୁନିଆଟା', ସୁନ୍ଦରୀ ଓ ଯୁବତୀ ! ଦୀର୍ଘ ଯାତ୍ରା ପରେ କ୍ଲାଂତି, କିଛି ନାହିଁ, ଖାଲି ହାଡ଼ ଗୁଡ଼ାକ ! ଦୂର ସଂପର୍କୀୟା 'ଆଁଟ୍' 'ଆଲେକ୍‌ଜାଣ୍ଡ୍ରା ଟଲ୍‌ଷ୍ଟୟ', ଯାହାଙ୍କୁ ସେ କହୁଥିଲେ



Source: Author, Digitized by PPRACHIN, SOA

'ତୃପ୍ତିକର' 'ୟୁନିକ୍' ତାଙ୍କ ଦେହର ଦର୍ପଣରୁ ଖୋଜି ଚାଲିଥିଲେ ନିଜର ମୂର୍ତ୍ତି ! ମୂର୍ତ୍ତି ତ ମିଳୁ ନଥିଲା, ଖାଲି ମିଳୁଥିଲା ତୃପ୍ତି ! ଶେଷରେ କୃଷକ-କନ୍ୟା 'ସୋନ୍ୟା', ସାତଥର ଉତାରି ଥିଲା 'ଯୁଦ୍ଧ ଓ ଶାନ୍ତି' ର ଫର୍ଦ୍ଦ ! ଆଉ କା'କୁ ଆଦରି ଘର କଲା ତ୍ୟାଗ କରି ଏକାଅଶୀ ବର୍ଷ ବୟସ୍କ ମର୍ଦ୍ଦ, ଏଇ ଟଲଷ୍ଟୟଙ୍କୁ !

ମୁଁ ମାର୍କଣ୍ଡେୟଙ୍କୁ କଲି ନମସ୍କାର !

ତାଙ୍କ ପାପୁଲିରେ ମୁଦ୍ରାର ଅନ୍ୟ ଏକ ଉଜ୍ଜ୍ୱଳ ପାର୍ଶ୍ୱ ! ଜଗଦମ୍ବାମୟଂ ପଶ୍ୟ !

ଜଗଦମ୍ବାମୟଂ ପଶ୍ୟ ସ୍ତ୍ରୀ ମାତ୍ରଂ ବିଶେଷତଃ !

ପୁରୁଷାଣୀୟା ନଦୀରେ ସ୍ନାନରତା ବୃହସ୍ପତିଙ୍କ ଭ୍ରାତୃଜାୟା ମମତା ! ପବନରେ ନୀରରେ ନାଚୁଛି ଲଳିତ ନଗ୍ନ ଯୁଗ୍ମ ପଦ୍ମ ତା'! ବୃହସ୍ପତିଙ୍କ ଦୃଷ୍ଟି ଲମ୍ବିଗଲା... ନଦୀ ନା' ନାରୀ ? ନାରୀ ନା' ନଦୀ ? ଓଲଟ ପାଲଟ ହୋଇଗଲା ତର୍ପଣବିଧି.... ଗର୍ଭସ୍ଥ ଶିଶୁ ପାଦରେ ବୁଜି ଧରିଛି ଗୁଂଫାଦ୍ୱାର !

'ଅଂଧ ଶିଶୁ ! ଦ୍ୱାର ଉନ୍ମୁକ୍ତ କର ! ଦ୍ୱାର ଖୋଲ !'

ମାଟିରେ ଖସିପଡ଼ିଲା ଦାର୍ଶନିକ ଗୌତମ !....

ଆପଣ ମାର୍କଣ୍ଡେୟ ! ଅହଲ୍ୟା କଥା ଜାଣନ୍ତି ? ଜାଁ କ୍ରିଷ୍ଟୋଁଫ ଓ ଶ୍ରୀକାନ୍ତ... ! ଆରନୋଲଡଙ୍କ ପୋଏଟ୍ରି ଡେଫିନେସନ ? ଇଲିୟଟ୍ ଓ ନଚିକେତା ଇମ୍ପର୍ସନାଲ୍ ଥିଓରି ? ସିଂବଲିଷ୍ଟ ଟେକ୍‌ନିକ୍ ଓ ଅବ୍‌ଜେକ୍ଟିଭ୍ କୋରିଲେଟିଭ୍ !!

ସମାଜରେ ସତ୍ୟଟା କେତେବେଳେ ଆହତ ନୁହେଁ ? ଆହତ ସତ୍ୟକୁ ଯିଏ ସୁସ୍ଥ କରି ବଂଚାଇ ରଖିଚି ସିଏ-ଦେବ୍ରାଜ ଲେଙ୍କା ଓ ସୂର୍ଯ୍ୟ ମିଶ୍ର ! ମୁଦ୍ରାପରି ସମୟ ଚଳନ୍ତି ! ଟାଇମ୍ ପାଷ୍ଟ୍ ଓ ଫ୍ୟୁଚର୍ ! ଆଗାମୀକୁ ଅନାଅ ! ପ୍ରତିପଶ୍ୟ ଯଥା ପରେ ! ପରିବାପରି ପଚିଯାଉଛି ଷ୍ଟ୍ରିଣ୍ଡବର୍ଗ ଓ ଟଲଷ୍ଟୟ୍। ଜଳିଜଳି ଲିଭିଯାଉଛି ଆଖି! କ୍ରୋଧ ଓ କୋଣାର୍କ !! ନଦୀ ଆରପଟେ ଲମ୍ବିଯାଉଚି କ୍ରିଷ୍ଟୋଁଫ !

ତୁମକୁ ସଂପୂର୍ଣ୍ଣ ଭୋଗମାନଙ୍କୁ ଭୋଗ କରିବାରେ ସମର୍ଥ କରି ଦେଉଛି ! ଯେଉଁ ଭୋଗ ମର୍ତ୍ତ୍ୟରେ ଦୁର୍ଲଭ ସେ ସମସ୍ତ ଇଚ୍ଛାନୁଯାୟୀ ହୁଅ ପ୍ରାପ୍ତ ! ତୁମକୁ ମହାନ୍ ଐଶ୍ୱର୍ଯ୍ୟବାନ୍ କରିଦେଉଚି ନଚିକେତା ! ନିଅ, ମନୁଷ୍ୟ ଲୋକରେ ଅଲଭ୍ୟ ଏ ରୂପସୀଗଣଙ୍କ ଦ୍ୱାରା ନିଜର ପରିଚର୍ଯ୍ୟା କରାଅ ! ସୁଖ ନିଅ ! ନିଅ !

କବିତାକୁ କେମିତି ସାରିବାକୁ ହୁଏ ଠିକ୍ ଜାଣିଥିଲେ ଇଲିୟଟ୍ ! ମାତ୍ର ପାଉଣ୍ଡ୍ ଖାଲି ବାଉଳୁ ଥିଲେ ଏକ ପ୍ରକାର ମନକୁ ମନ ସଂଚାରିତ ହେଉଥିବା ଗଣିତ ବୋଲି କବିତାକୁ ଭାବି ! ନ ବିତେନ ତର୍ପଣୀୟୋ ମନୁଷ୍ୟୋ... ଧନରେ କଦାପି ତୃପ୍ତି ଆସେ ନାହିଁ !



Source: Author, Digitized by PPRACHIN, SOA

ଯେତେ ଲାଭ କଲେ ବି ନଦୀ ସମୁଦ୍ର କେବେ ପୂର୍ଣ୍ଣ ହୋଇଯାଏ ନାହିଁ ! ଅଗ୍ନି ଯେତେ ଲାଭ କଲେ ବି ଇଂଧନ....

ଅନ୍ଧ ଆଉ ଜଣେ ଅନ୍ଧକୁ ଦୃଶ୍ୟରୁ କି ସ୍ୱାଦ ଦେବ ? ପାଠ ଜାଣି ନଥିବା ଲୋକ ପରୀକ୍ଷାର୍ଥୀକୁ କି କପି ଦେବ ? ଯମଙ୍କୁ ଜବାବ ଦେଇଛି ନଚିକେତା !

'ନାତିଦୀର୍ଘେ ଜୀବିତେ କୋ ରମେତ ?'

ଅନିତ୍ୟ ପଦାର୍ଥ ଦ୍ୱାରା ନିତ୍ୟ ପଦାର୍ଥ ହୁଏ ପ୍ରାପ୍ତ ?

ପାଶବିକତାର ଲଫାପା ଭିତରେ ମିଛ ଭୋଗ ସାମଗ୍ରୀ ଡାକ ଆଣି ଦେଇଛି ! ପଶୁଠୁ ମନୁଷ୍ୟର ଦୂରତା କେତେ ? ମଦିରା ଓ ମୈଥୁନଠୁ ମଂଦିର ?

କାହିଁକି ବୋହିବି ପିଠିରେ ଏ ରମଣୀମାନଙ୍କ ରମଣର ବୋଝ ?

ପ୍ରଭୋ, କ'ଣ ହେବ ଏ ଧନ ? କେତେ ଶୀଘ୍ର ପତନ ହେଲା ବୁଶ୍ ଓ ରିପବ୍ଲିକାନ୍ ଦଳ !

ଆଜି ମଲେ କାଲିକୁ ଦି' ଦିନ !!

ମଣିଷ ଅଦ୍ଭୁତ ! ମଣିଷ ବର୍ତ୍ତମାନ ! ଗଛ ତା' ଅତୀତ ଓ ସେ ନିରସ୍ୱ ଭବିଷ୍ୟତ !

ସତ୍ୟ ସବୁଦିନେ କଠୋର ! ଭାରି ନିଷ୍ଠୁର ! ଅତୀତ ଶୁଖିଯାଇଥିଲେ ବି ଯନ୍ତ୍ରଣାପ୍ରଦ ! ଯନ୍ତ୍ରଣାଦାୟକ ତ୍ରୁଟିର ଅନୁଭବ ଓ ପରିସ୍ଥିତିର ଆଲିଙ୍ଗନ ? ଉଡୁଥିବା ପକ୍ଷୀର ଡେଣାପରି ଦୁଃଖ ଓ ହାହାକାର ଛାତି ଭିତରେ ହୁଏ ବଳ କଷାକଷି !

କ'ଣ ଦରକାର ଥିଲା, ସାପର ଆଁ ଭିତରେ ସେ ଭର୍ତ୍ତି କରିଦେଲା ଗୋଟିଏ ଆପେଲ୍ ? ମୃତ ମୂର୍ତ୍ତି ବେକରେ ଲମ୍ବାଇଦେଲା ଗଜମୁକ୍ତା ମାଲ୍ୟ, କାହିଁକି ? କାହିଁକି ? ଘଟଣାର ଦୁର୍ଘଟଣା ଘଟିଗଲା କାହିଁକି ?

ଓଃ ! ମଣିଷ ଅପରିଣାମଦର୍ଶୀ !

ଅନ୍ୟର କ୍ଷତି କରିବାରେ ମିଳେ ତାକୁ ତୃପ୍ତି !

କୌତୁହଳ ଓ ଦୁଷ୍ଟାମିରେ ସିଏ ଭାରି ଫୁର୍ତ୍ତି ! କାରଣ – ସିଏ ମଣିଷ ! ମଣିଷ !

ତକ୍ଷକର ଦଂଶନରେ ମୃତ୍ୟୁ ଲଭିବାକୁ ବାଧ୍ୟ, ତା' ପାଖରେ ନାହିଁ କିଛି ମହନୀୟ ଗୁଣ ! ତା' ଜୀବନ ପରି ତା'ର ସବୁ ଆଦର୍ଶ ମିଛ, ସୁଧୁ ମିଛ !

ସେ ଏକ ଥୁଣ୍ଟା ଗଛ !!


Source: Author, Digitized by PPRACHIN, SOA

# ନିଜ ରାସ୍ତାର ବ୍ୟାକରଣ

ଫୋମ୍‌ର ମୁଲାୟମ ଫାଳେ ସକାଳ !

ହେ ରାମ ! ସେଦିନ ହିନ୍ଦୁ ଧାର୍ମିକ ସଂସ୍କୃତିରେ ଆପଣ ଭରିଦେଲେ କି ଉତ୍କଟ ପ୍ରମାଦ ! ଆଦର୍ଶ ପ୍ରଦର୍ଶନ କରିବାକୁ ଯାଇ ପରଘର କଳିର କାଳିମା ଆପଣ ସିନା ନିଜ ମୁଣ୍ଡରେ ଦେଲେ ବୋଲି ! କିନ୍ତୁ ତାହା ବୋଲି ହୋଇଗଲା ହିନ୍ଦୁ ଇତିହାସ ସାରା ! ନାରୀ ନିର୍ଯ୍ୟାତନାର ଶ୍ରେଷ୍ଠ ଲଜ୍ଜାଜନକ ଘଟଣା ଏହାଠୁ ଅଧିକ ଆଉ କ'ଣ ଥିଲା ? ମାନବିକତାର ଇତିହାସରେ ରାଜଧର୍ମ ବୋଲିଦେଲା କଳଙ୍କ ! ନା ସଂକୀର୍ଣ୍ଣତା ଧର୍ମର ଚଦର ତଳେ ଆତ୍ମଗୋପନ କରି ଆରକ୍ଷଣ କରୁଥିଲା ଧର୍ମକୁ ?

ସେଇ ଦୁଃଖ, ଲଜ୍ଜା ଓ ହିଂସାର ପୁନରାବୃତ୍ତି ! ପ୍ରାର୍ଥନା ସଭାରେ ପୁଣିଥରେ ! ପିସ୍ତଲ ଚୋଟରେ ଇତିହାସ ଛାତି ହେଲା ଶୋଣିତସିକ୍ତ !

ଯିଏ ଅହିଂସ୍ର ସିଏ ଆର୍ଯ୍ୟ ! ଆର୍ଯ୍ୟ ବି ବେଳେ ବେଳେ ହୋଇଯାଏ ଅନାର୍ଯ୍ୟ ?

୧୯୫୦ ଜାନୁୟାରୀ ୩୦ !

ଗୁଳି ମାଡ଼ରେ ଶୋଇଗଲା ଭାରତବର୍ଷ ! ଐରାବତ ଶୋଇଗଲା ! ପଦ୍ମପାଖୁଡ଼ା ଦୁଇଟି ବୁଜି ହୋଇଗଲା ! ହେ ରାମ ! କ୍ଷମା କର ! କ୍ଷମା କର...., ସେମାନେ ଜାଣିନାହାନ୍ତି ସେମାନେ ଯେ କ'ଣ କରୁଛନ୍ତି !

ଧର୍ମର ଅର୍ଥ କ'ଣ ହିଂସା, ଦଙ୍ଗା ? ବାଃରେ ବ୍ୟାଖ୍ୟା !

୧୯୯୨ ଡିସେମ୍ବର ! ସରି ସରି ଆସୁଛି ଅଭିଶପ୍ତ ପୂର୍ବାହ୍ନ ! ତକ୍ଷକ ଆସିଛି !

ସେଦିନ ନଭେମ୍ବର ୩୦, ଠିକ୍ ସେମିତି ଗାନ୍ଧୀ ! ଦେହରକ୍ଷୀର ରକ୍ତପିପାସୁ ଗୁଳି... !

ଭାରତ କ'ଣ ଲଜ୍ଜାହୀନ ନିଷ୍ଠୁର ଗୋଟିଏ ଜହ୍ଲାଦ ନାଁର ଦଲିଲ ! ଅହିଂସା ପୁଣ୍ୟମାଟି ମା' ତା' ଅମାତା ? ନା' ମିସ୍‌ୟୁଜ୍ ଅଫ୍ ରିଲିଜିଅନ୍ ?

ଧର୍ମ କ'ଣ ଇଟା, ପଥର କଂକ୍ରିଟ୍ ଓ ଧୂଳିର ସ୍ଥାପତ୍ୟ ?

ମନ୍ଦିରକୁ ମସ୍‌ଜିଦ୍ ଓ ମସ୍‌ଜିଦ୍‌କୁ ମନ୍ଦିର କରି ଦଧୀଚିକୁ ବଦଳାଇ ଦେବ ?



Source: Author, Digitized by PPRACHIN, SOA

ପରୀକ୍ଷିତ ଫେରୁଚି !

ସେ ଅସ୍ୱୀକାର କରିପାରୁନି ପୌରାଣିକ ହିନ୍ଦୁବାଦକୁ ! ଭକ୍ତିକୁ ! ତା' ଚିତ୍ତକ୍ଷୋଭ, ଆବେଗ ଓ ଜନ୍ମଗତ ପ୍ରଭାବକୁ !

ଜନ୍ମବେଳେ ରାମଜନ୍ମ କଥା ଶୁଣିଥିଲା କର୍ଣ୍ଣଦ୍ୱୟ ! ଯୌବନରେ କେତେ ନିଷ୍ଠୁର ଉଲ୍ଲାସପୂର୍ଣ୍ଣ ହା ରାମ ! ଏବଂ ଏବେ ଆଖି ବୁଜିଦେବା ବେଳେ !! ତକ୍ଷକ ଦଂଶନ ... !

ରାମ ନାମ ସତ୍ୟ ହେ ! ତେବେ ତା' ଏଇ ଅଯୋଧ୍ୟା ଯାତ୍ରା; ପକେଟରେ ଆଣିଥିବା ଭଗ୍ନ ଇଟାଖଣ୍ଡ ? ଭୋଟ ବାକ୍ସ ? ଧର୍ମ ନାମରେ ଦୂଷିତ ଶ୍ରେଣୀବଦ୍ଧ ଅପକର୍ମ ?

ସବ୍‌କୁଛ ଝୁଟ୍ ହେ !

ସବ୍‌କୁଛ ଝୁଟ୍ ହେ !

ଇତିହାସ କଳାପାହାଡ଼କୁ କ୍ଷମା କରିଛି ?

ପରୀକ୍ଷିତ ସାମ୍ନାରେ ନାଥୁରାମ ଠିଆ ହୋଇଛି ! ତା' ହାତରେ ଇଏ ଇଟା ନୁହେଁ ପିସ୍ତଲ !! ସେ ଇତିହାସ ଛାତିକୁ ବିଦ୍ଧ କରିଛି ? ନା ନିଜ ଅପକର୍ମର କଳଙ୍କରେ ପୃଷ୍ଠାଏ ଇତିହାସକୁ କଳା କରି ଦେଇଛି ?

ତକ୍ଷକ ଦଂଶିବ ତାକୁ ? ନା ନିଜ ଅପକର୍ମର ଜ୍ୱାଳାରେ ଜାଳିବ ଫର୍ଦ୍ଦେ ଇତିହାସକୁ ?

ସୁଗଂଧ ଓ ଦୁର୍ଗଂଧ, ନାକ ପାଇଁ ଏକ ସ୍ୱାଦ ! ପରୀକ୍ଷିତ ବସିଛି ! ବସୁ !

ତା' ସାମ୍ନାରେ କିଛି ନାଇଁ, ନାହିଁ ? ପବନରେ ଉଡ଼ି ଯାଉଥିବା ସନ୍ନ୍ୟାସୀର ସ୍ୱେଦସିକ୍ତ ଉତ୍ତରୀୟ ! ଶ୍ରମଣା ଝୀନ ଶାଟୀକାର ଲହରିତ ଭଗୱା ପଣତ ! ଧୂଳିସାତ ହୋଇଥିବା ଧାରଣାର ଗୁଣ୍ଡ ଗୁଣ୍ଡ ମାଟି ! ନାହିଁ ? ଜୈନ ସାଧ୍ୱୀ ଚୂନ ଧବଳା ମହମର ମୂର୍ତ୍ତିଏ ନାରୀ ! କିଛି କହିବନି, ପାଟିରେ ତା' ପ୍ୟାଚ୍ ପଡ଼ିଛି !

ପୁଣ୍ୟ ପାପକୁ କହିବ କ'ଣ ?

ସ୍ୱାଦ ଓ ଫେସନର ପରିବର୍ତ୍ତନ ସହ ଗନ୍ଧଜନ୍ମ ଏକ ସୂତ୍ରରେ ଆବଦ୍ଧ !

ଅତିମାନସ ରାଜ୍ୟ କ'ଣ ?

କ'ଣ ରୂପାନ୍ତର ଯୋଗ ?



Source: Author, Digitized by PPRACHIN, SOA

ବାଃ ବଢ଼ିଆ ଗଳ୍ପ ! ତାସ ଫେଣ୍ଟ, ତାସ ଫେଣ୍ଟ ! ବାରଙ୍ଗଠୁ ବାଣୀବିହାର ବାର ବାଜି ହେବ !

ଭକ୍ତ କାଟି ଦେଇଛି ଲକ୍ଷ୍ମଣ ରେଖା- 'ମୁହିଁ ଯିବାଯାଏ ପ୍ରଭୁ ତୁମ ରଥ ଥିବ ରହି !'

ହାସତାଇ କ୍ରିସ୍‌କାସ ସିନା ବିଶ୍ୱାସ କରୁଥିଲେ- ବିଶ୍ୱଗତ ବସ୍ତୁ ଈଶ୍ୱରଙ୍କ ତନୁ !

ସମୟର ରୂପସ୍ନାନରେ ତପ୍ତପ୍ରାଣ ପରୀକ୍ଷିତ ଏବେ ଅର୍ଦ୍ଧଦଗ୍ଧ ଜଗନ୍ନାଥ ! ନିର୍ବାକ୍ ଓ ସ୍ଥାଣୁ !

ବିଷ୍ଣୁପଦ ଚିଠି ଲେଖିଛି : ସବୁବେଳେ ତିନିକଥା ମନେ ରଖିବି ! ଯେତେବେଳେ ରାଜପଥ ହେବ କର୍ଦ୍ଦମାକ୍ତ ସେତେବେଳେ ବାଟ ଛାଡ଼ି ଅବାଟରେ ଯିବି ନା' ବାଟସ୍ଥ କାଦୁଅ ଭିତରେ ପଶିବି ? ସାଇକୋଲଜି ଓ ଆଷ୍ଟ୍ରୋଲଜି କିଏ ଠିକ୍ ? ଠିକ୍ କିଏ? ମଣିଷ ମୁହଁ ଦେଖି ତିଆରି କଳ୍ପନାର ଜ୍ୟାମିତି ନା ମୁହଁଠୁ ଅଲଗା ତା' ସ୍ୱଭାବର ଯନ୍ତ୍ରା ? ମନ୍ତବ୍ୟ ଓ ମତାମତ, ଏମାର ମଠ ଓ ରାମକୃଷ୍ଣ ମିଶନ, ଗୋଟିଏ ଭାଡ଼ିର ଦୁଇଟି ପ୍ରକୋଷ୍ଠ ! ପ୍ରକୋଷ୍ଠ ଦେଖିଛି କିଏ ?

ପ୍ରକୋଷ୍ଠ ବାହାରେ ବିଷ୍ଣୁପଦ ଅପେକ୍ଷା କରିଛି ନିରାପଦ ଦୂରତ୍ୱକୁ ! ଭାରତବର୍ଷବି ଅପେକ୍ଷା କରେ ନିରାପଦ ଭବିଷ୍ୟତକୁ ! ପିଂଜରା ଭିତରେ ସର୍କସ ବାଘ ସୁନ୍ଦରୀ ରମଣୀ ସହ ଶୟନ କରେ ଗୋଟିଏ ଶଯ୍ୟାରେ ! କାରଣ: ଜୀବନ ଏଠି ବଡ଼ ନୁହେଁ, ବଡ଼ ଜୀବିକା ପାଇଁ ପ୍ରଦର୍ଶିତ ସର୍କସ୍ !

ଗଳ୍ପ ଗୋଟେ ଇଡିଏଟ ସର୍କସ !

ଥରକୁ ଥର ତା' ବନାନଟା ମୁଁ ଭୁଲ୍ କରି ବସେ ! ଥରକୁ ଥର ତ ଭୁଲିଯାଏ ନିଜ ରାସ୍ତାର ବ୍ୟାକରଣ ! ଗଳି ଓ ଅଗଳି ! ନିଜ ଆଲୋକରେ ନିଜର ଅନ୍ଧାର !!

ରୁଗ୍ଣ ଜହ୍ନପରି ଭାରି ଦୁର୍ବିସହ ! ଦରମଲା ସାପପରି ଭାରି ଭୟାନକ ବାକ୍ୟ ! ଖରାର ଧମକ ଶକ୍ତ ଏବଂ ସୁତୀକ୍ଷ୍ଣ ! ଅଜଣା ଓ ଅନିବାର୍ଯ୍ୟ ଭବିଷ୍ୟତ ସାୟା ଫିତାପରି ବସ୍ତ୍ର ତଳେ ଅଣ୍ଟାକୁ ରୁଟୁ ରୁଟୁ କାମୁଡ଼େ ! ଲଜ୍ଜାବତୀ ନାରୀର ମୁହଁପରି ଶବ୍ଦମାନେ; ଟେବୁଲ ଲ୍ୟାମ୍ପପରି ଜଳୁଥିବା ଗୋଟିଏ ହୃଦୟ ଖୋଜନ୍ତି !

ସେ ହୃଦୟ ତମ ପାଖରେ ଅଛି ପରୀକ୍ଷିତ ? ଅଛି !



Source: Author, Digitized by PPRACHIN, SOA

ତା' ହେଲେ ବିଷ୍ଣୁପଦ ଦେଖୁ କିଏ ବେଶୀ ଭୟାନକ ସୁନ୍ଦରୀ ରମଣୀଠୁ ବାଘ ? ନା ଚଷମା ଆରପଟୁ ଭାସି ଭାସି ଆସୁଥିବା ଢଳ ଢଳ ସାହାନାଇର ଦୁଇବୁନ୍ଦା ଶବ୍ଦ ! କିଏ ?

ପରୀକ୍ଷିତ ମୁହଁରେ ହସର ପଏଜନ୍ ! ସେ ହସୁଛି ଘର ମାଲିକପରି !

ପରୀକ୍ଷିତ ଦେଖାଯାଉଛି ଯେମିତି ଗୋଟାଏ ଫୋପଡ଼ବଜା ଫଟା ସବୁଜ ଆମ୍ବ ! ତା' ସାମ୍ନାରେ ଶାୟିତା ମହାରାଣୀ ମହାରାଣୀ ନୁହେଁ ଗୋଟାଏ ମତ୍ସ୍ୟକନ୍ୟାର ଶବ ! ଯେମିତି ଘଣ୍ଟାକଣ୍ଟା ଉପରେ ଗାରେ ରେଡିୟମ୍ ! .... ନାଚୁଚି ପଦ୍ମ ! କିଏ ତାକୁ କରିବ ବନ୍ଦ ? ଶବ୍ଦ ଶବ୍ଦ ନୁହେଁ, ନିଶବ୍ଦ !

ବହିର ଦୁଇ ମଲାଟ ପରି ଯୋଡ଼ି ହୋଇଗଲା ହାତ !

ମଣିଷ ପରସ୍ପର ଅସଂଲଗ୍ନ ନାନା ଖଣ୍ଡ ଚେତନାର ସମଷ୍ଟି ! ଅବ୍ୟସ୍ଥିତ ଅସ୍ତିତ୍ୱ ! ଗୋଟିଏ ସଂଜୀବିତ ପ୍ରତିଫଳକ ! ତହିଁରେ ତା' ଅନୁଭୂତି, ଅଧ୍ୟୟନ ଓ ପରିସ୍ଥିତି ହୋଇଛି ଅଙ୍କିତ ! ଶବ୍ଦ ଶବ୍ଦ ନୁହେଁ, ଗୋଟିଏ ଗୋଟିଏ ମେଜିକ୍ ମୁକୁର ! ତହିଁରେ ମୁଖାବଲୋକନ କଲେ ମର୍କଟ ଦେଖାଯାଏ ଯେମିତି କନ୍ଦର୍ପ !

ପରୀକ୍ଷିତ ନିଜକୁ ଅବଲୋକନ କରୁଛି ! ତା' ସାମ୍ନାରେ ଇଏ ସବ୍‌ଜେକ୍ଟ ନୁହେଁ ଅବ୍‌ଜେକ୍ଟ ! ଏକ୍‌ଜିବିଟ ନୁହେଁ ଇଂଜେକ୍ଟ ! ତା' ସ୍ନାୟୁ ଭିତରେ ମାହାରାଣୀ ନୁହେଁ, ମାଳବିକା ! ମାଳବିକା ?

ଯାହାଙ୍କୁ ଶୈଶବପରି ସିଏ ଫେରାଇ ଦେଇଛି ?

ଗପନୁହେଁ, ଇଏ ଗୋଟିଏ ପ୍ରୋଜେକ୍ଟ ! ମାଳବିକା ଓ ସେ ! ଜ୍ୟାମିତିର ବିପରୀତାଭିମୁଖୀ ଦୁଇ ଶକ୍ତି ! ତହିଁରୁ ଯେଉଁ ତୃତୀୟ ଶକ୍ତିର ସୃଷ୍ଟି ତାହା ତା' ଅତୁଟ ଅନୁଭୂତି ! ପ୍ରଣବପରି ଭାରି ସତ୍ୟ !

କବି କିଛି କହିବେ ନାହିଁ ? ନ କହନ୍ତୁ !

ଉପସ୍ଥାପକ କିଛି ଉପସ୍ଥାପିତ କରିବେ ନାହିଁ ! ନ କରନ୍ତୁ !

କେବଳ ଅନ୍ୟ କିଛିର ମାଧମରେ ପରୀକ୍ଷିତ ମହାରାଣୀଙ୍କୁ ଅବଗତ କରାଇଦେବ ଯେ ସେ ମାଳବିକା ନୁହଁନ୍ତି, ମହାରାଣୀ ! ଆଉ ମାଳବିକା ? ସେ ତା' ଯୌବନ ନୁହେଁ,


Source: Author, Digitized by PPRACHIN, SOA

ଶୈଶବ ! ତା' ଚିତ୍ତରେ ଯିଏ ଭାବ ସଂବେଗ ଜାତ କରେ ସିଏ ମାଳବିକା ବା ମହାରାଣୀ ନୁହେଁ, ସିଏ ଲାସ୍ୟରତା ଯୁଗଳ ପଦ୍ମ ! ଗୋଟିଏ ଅବ୍‌ଜେକ୍ଟ ! ତା' ଚକ୍ଷୁପତାର ବାତାୟନ ଯାହା ଦୃଶ୍ୟଗତ ଗନ୍ଧର ସ୍ପର୍ଶରେ ରହିଚି ମୁକୁଳା ଓ ମହାରାଣୀଙ୍କ ଚକ୍ଷୁପତାର ପେଟେରା ରହିଚି ଅବରୁଦ୍ଧ, ଯାହା ଲୀଳାୟିତ ଲାସ୍ୟ ସଂଦର୍ଶନରେ; ସେଇ ଅବ୍‌ଜେକ୍ଟ ! ଅବ୍‌ଜେକ୍ଟ !

ପବନ ଯେମିତି ଗୋଟାଏ ପୁରୁଷର ଓଠ ! ମହାରାଣୀ ତନୁ ତୁଠର ଉଜ୍ଜ୍ୱଳ ଜଳରେ ଲହଲହ ତା' ପାଦ ! ଚୁମିଗଲା ଚେତନା ସମଗ୍ର ! ସ୍ୱପ୍ନ ଯେମିତି ପଟେ ଉଷୁମ୍ ରୁଟି ! ଅଥଚ ପରୀକ୍ଷିତ ଚକ୍ଷୁରେ ନାହିଁ ନିଦ୍ରାର କ୍ଷୁଧା ! ତା' ଚକ୍ଷୁରେ ଟଳମଳ ଧବଳ ଦୂରତା ! ଏଇ ଦୂରତାର ଧ୍ୟାନସ୍ଥ ଋଷି ମାଳବିକା ପାଇଁ ଘଣ୍ଟା ଘଣ୍ଟାପରି କେବେ ରହିନି ଅଟକି ! ଅଥଚ ଆଜି....

ଆଜି ସେ ଅବଜ୍ଞା କରିଯିବ; ଯେମିତି ପିଟର୍ ଅବଜ୍ଞା କରିଗଲା ଖ୍ରୀଷ୍ଟଙ୍କୁ, ସେମିତି ସେ ତାକୁ ? ଚାଲିଗଲେ କାନ୍ଧରେ ଭାରି ହେଉଛି ଉପବୀତ ! ବସିରହିଲେ ଦା' ପରି କାଟୁଛି ଅଂଧାର ! କ'ଣ ତେବେ କରିବ ପରୀକ୍ଷିତ ? କ'ଣ ତେବେ କରିବ ?

ହେ ଋଷିବୃନ୍ଦ, ମୋତେ କୁହ ଦୁଇରୁ ଦ୍ୱାଦଶ ଅଧ୍ୟାୟ ପରେ ଅଧ୍ୟାୟ, ଅବିରକ୍ତକର ମୋ ଜୀବନର ଭାଗବତ ! ଗପ ଶୁଣୁ ଶୁଣୁ କେତେବେଳେ ଆସି ଉପସ୍ଥିତ ହେବ ତକ୍ଷକ ! ମୋ ଅଜ୍ଞାତରେ ଚନ୍ଦନପେଡ଼ିରୁ ପବନପରି ଶୋଷିନେବ ଘଷା ଚନ୍ଦନତକ !!

ଗ୍ୟାଲେରୀର ପ୍ରଥମ ପାହାଚରେ ସେମାନେ ! ଦଳେ ବାର୍ଦ୍ଧକ୍ୟ ! ସେମାନଙ୍କ ଉଚ୍ଚକିତ ଆବେଗ ଏବେ ଶିଥିଳ ! କିନ୍ତୁ ନୁହେଁ ଗନ୍ଧହୀନ ! ମାନବ ସତ୍ତା ତାଙ୍କର ଆତଙ୍କିତ ! ଆମ୍ଭାକୁ ଛିନ୍‌ଭିନ୍ କରି ସେମାନଙ୍କ ବସଂତ ଏବେ ଅପସରି ଯାଇଛି ! ଯାଉ !

ନିଛକ ପ୍ରବାହର ଏହା ହିଁ ସତ୍ୟପାଠ !

ସେମାନେ ସମସ୍ତେ ଆସକ୍ତି ଜନିତ ନୈରାଶ୍ୟବୋଧର ଶିକାର ! ମୁଖବାଟେ ମଳତ୍ୟାଗି ବାଦୁଡ଼ି ! ଏକାକୀତ୍ୱବୋଧର ଅବସାଦରୁ ଲଂଫ ମାରିଥିଲେ ଫୁଲଫୁଟା ବେଳକୁ !

ବେଳ ତ ଯୌବନ ପରି କ୍ରମକ୍ଷୟିଷ୍ଣୁ ଐଶ୍ୱର୍ଯ୍ୟ !!

ଶାନ୍ତି ପାଇଁ ନୋବେଲ୍ ପୁରସ୍କାର ପାଇସାରିବା ପରେ ଶୋଇପାରୁ ନଥିଲେ ଗୁର୍ବାଚୋଭ ! କ୍ଲିଣ୍ଟନ୍ ନେତ୍ର ଅମୁଦ୍ରିତ ! ଠିକ୍ ଏମାନଙ୍କ ପରି ଝାଓ ଏନ୍ ଲାଇଙ୍କ ଚକ୍ଷୁରେ ଥିଲା



Source: Author, Digitized by PPRACHIN, SOA

ଅନିଦ୍ରାର ସ୍ଥିତିବାଦୀ ଯନ୍ତ୍ରଣା !

କ୍ଲେଶ ଓ ଦୁର୍ଗତିର ମୂର୍ଦ୍ଧାରଖାନାରେ ଯେଉଁ ଲୋକଟି ବେପରବା ଶୋଇପାରୁଥିଲା, ଲଜ୍ଜାକର ବ୍ୟଭିଚାର ଲିପ୍ତ ସେଇ ନିନ୍ଦିତ ଗଜପତିଟିକୁ ମୁଁ ଚିହ୍ନିଥିଲି ମାର୍କ୍ୟୁସ୍ ଡି ସେଡ୍ ବୋଲି ! ଜ୍ଞାନଦୀପ୍ତ ଅପରିବର୍ତ୍ତନଶୀଳ କଂକ୍ରିଟ୍ ଶବ୍ଦର ଗୋଟିଏ ଧାଡ଼ି ତାଙ୍କ ଓଠର ଟାଇପ୍ ମେସିନ୍‌ରୁ ଟକ୍‌ଟକ୍ ହୋଇ ଆସିଲା ବାହାରି !

ମାଇଁ ବଏ ! ଏମାନେ ସମସ୍ତେ ହସ୍‌ପିଟାଲ୍‌ର ଅପରିଚିତ ରୋଗୀ ! ସେମାନଙ୍କ ଛାତିରେ ଅସହାୟବୋଧର ଯନ୍ତ୍ରଣା ! ୟୁ କ୍ୟାଣ୍ଟ ସି ! କାରଣ ସେମାନେ ସମସ୍ତେ ବିଭ୍ରୁପ୍ରତିମ ବ୍ୟକ୍ତିତ୍ୱ ହାଃ-ହାଃ-ହାଃ, ବିଭ୍ରୁପ୍ରତିମ ବ୍ୟକ୍ତିତ୍ୱ.... ! ସେମାନଙ୍କର ବି ସେକ୍‌ସ ସ୍ୱଚ୍ଛଳ ଆତ୍ମଭାବ ରୂପେ ସଂପ୍ରସାରିତ ହୋଇଚି ସମଗ୍ର ଚେତନା ସମୁଦ୍ର !

ପବନରେ ଉତ୍ତାପର ବାସ୍ନା !

ରୁମାଲରେ ସ୍ମୃତିର ଗନ୍ଧ !

ମୁହଁ ପୋଛିଦେଲା ପରେ ଝରକା ଆରପଟେ ନିଃସଙ୍ଗ ବିହଙ୍ଗର ସୁଦୂର ଯାତ୍ରାର କି ସୁନ୍ଦରତମ ଦୃଶ୍ୟ ! ଫମ୍ପା ଭଙ୍ଗା ବୋତଲପରି ମୋ ପାଖରେ ଅଛି ସାଇତା ଭଙ୍ଗା ସ୍ୱପ୍ନ ! ସେମାନଙ୍କ ପାଖେ ପାଖେ ଯୋଗାଇ ଦିଆଯାଇଛି ଗଭୀର ଓ ଗାଢ଼ ଚିକ୍‌କଣ ଭସ୍ମୀଭୂତ ଉଦାସର ଫେନିଳ ଝଲ ଝଲ ସ୍ୱୀକାର୍ଯ୍ୟ !

ରିକ୍ତ ଜୀବନଚର୍ଯ୍ୟା ? ଜୀବନ ନିର୍ଦ୍ଦୟ ସଂକୀର୍ଣ୍ଣ ଗଳିମାନଙ୍କ ସଂକଳନ ! ଶୈଳୀସର୍ବସ୍ୱ ମୂର୍ଚ୍ଛନା ବି ପ୍ରତିହତ! ରୀତି ଅଛି ନୀତି ନାହିଁ ! ବହୁଥିବା ନଦୀ ବଂଧ ମାନି ନାହିଁ ! ନିଷ୍କରୁଣ କୋଳାହଳ ମଧୁ ମକ୍ଷିକାର ଗୁଂଜରଣ ବା ଉଦ୍ଦୀପିତ ପ୍ରେମିକାର ଅସ୍ପଷ୍ଟ ଉଚ୍ଚାରଣ ରୀତିଚାତୁରୀ କପାଳରୁ ସିନ୍ଦୂରପରି ପୋଛି ଆଣିଛି ? କି ଭୟାନକ ଏ ବିଧବା ସହର ! କି ଭୟଙ୍କର ଏ ତୃଷିତ ଜୀବନ !!

'ସାଥୀ ତ ନାହିଁ ଆଜି ଏ ଆଷାଢ଼ ପ୍ରାତେଃ.... !

ବନ୍‌ଶୀରେ ନଦୀଗର୍ଭରୁ ଉଠିଆସୁଛି ପଟେ ଜୋତା; ନୁହେଁ ମାଛ ! ନଦୀରେ କେହି ବନ୍‌ଶୀ ପକାଏ କ'ଣ ପାଇବାକୁ ପଟେ ମଲାଘୋଡ଼ାର ଟାଙ୍କ ?

ସ୍ନେହ ସ୍ନିଗ୍ଧ ନିସ୍ତବ୍ଧତାର ବ୍ୟଞ୍ଜନା ମୋତେ ଆକର୍ଷି ଆଣି ଦେଖାଇଲା ମନସ୍ତତ୍ତ୍ୱର ଲଫାପାରେ



Source: Author, Digitized by PPRACHIN, SOA

ସାଇତା ଗୋଲ ଗୋଲ ହସ୍ତାକ୍ଷରରେ ଚିଠି ! ଝିଅ ଆଇ ବେଇ ଲେଖିଚି ଈର୍ଷାରେ ନୁହେଁ ସାଦା ସୌକ୍‌ରେ; ସିଏ ନିଜେ ଆଖିରେ ଦେଖିଚି ଫର୍ଦ୍ଦ ଫର୍ଦ୍ଦ ହୋଇ ଦୀର୍ଘ ଆଠଶତ ପୃଷ୍ଠା !

ତା' ବୋଉ ସାଂଘାଇର ଜଣେ ପୁଂଜିପତି କନ୍ୟା ! ପ୍ରତି ନିଶୀଥରେ ଗୋଟିଏ ଶଯ୍ୟାରେ ସାରାରାତି ପ୍ରଧାନମନ୍ତ୍ରୀ ଝାଓ ଶିଶୁଟିପରି ଉଲଗ୍ନ ହୋଇ ତା' ବୋଉଙ୍କ ସ୍ତନର ପୁଷ୍ପଦାନୀ ଉପରେ ଓଜାଡ଼ି ହୋଇ ପଡୁଥିଲେ !

କନ୍ୟା ଆଇ. ବେଇ କହନ୍ତି ଝାଓଙ୍କ ଅବୈଧ ସଂପର୍କରେ ବନ୍ଦ ପୃଷ୍ଠା ! 'ଇଟ୍ ଇଜ୍ ହାର୍ଡ ଟୁ କଲ୍ ହିମ୍ ଡାଡ୍ !'

ନୀଳଦଂଶନର ନୈରାଶ୍ୟ ଜର୍ଜରିତ ଜ୍ୱାଳା କି ଭୟଙ୍କର ! ମାନବ ସତ୍ତା କି ଅବସନ୍ନ, କି ଶୀର୍ଣ୍ଣ ଓ ଶିରାଳ ! ଦୃଷ୍ଟିର ଜଟିଳତା ଦୁର୍ବାର ଓ ଅନ୍ୟତମ ବାସ୍ତବ ! ପୁଚି ଡାଭିସ୍‌ଙ୍କୁ ଜାଣ ? ରୋନାଲଡ ରେଗନ ଓ ନାନ୍‌ସୀଙ୍କ ଝିଅ !

ନାରୀ ଯୌବନ କ'ଣ ଲୁଗା ଦୋକାନରେ ସଜା ଯାଇଥିବା ଖଣ୍ଡେ ଆକର୍ଷଣୀୟ ବ୍ରା ? କାନ୍ଦୁଥିବା ସ୍ୱପ୍ନ ପରି କି କରୁଣ 'ପ୍ଲେ ବୟ୍' ଜୁନ୍ ମାସ କଭରରେ ପ୍ରକାଶିତ ପୁଚି ଡାଭିସ୍‌ର ନଗ୍ନ ଦେହ ! ଅସୁଖୀ ମଣିଷକୁ ଏହା ଦେଲା କେଉଁ ପ୍ରାଣସ୍ଫୂର୍ତ୍ତି ଆଶ୍ୱାସନାର ଐଶ୍ୱର୍ଯ୍ୟ ?

ରାସ୍ତା ବନ୍ଦ !

ଭୀଷଣ ଜଙ୍ଗଲ !

ଜଙ୍ଗଲରେ ଅଜୟ, ଆଦିତ୍ୟେଶ୍ୱର ଓ ମନୋରଞ୍ଜନମାନଙ୍କ ବାଘର ହେଣ୍ଟାଳ !

ଅବଶ୍ୟମ୍ଭାବୀ ମୃତ୍ୟୁର ପ୍ରାଚୀର ! ଶୈଳୀର ପ୍ରଶସ୍ତ ବୈଶିଷ୍ଟ୍ୟ ବେଦନାର୍ତ୍ତ ସଂକ୍ରମିତ ଅଭିନ୍ନ ବାସ୍ତବତା ! ଅତୃପ୍ତ ଉଦ୍‌ଗତ ସଂପର୍କଠୁ ପଳେଇ ପାରିବ ମଣିଷ !

ଅନାୟତ୍ତ ଅପରିଚ୍ଛନ୍ନ ପ୍ରଭାବଶାଳୀ ପ୍ରଦୂଷିତ ପରିବେଶ ଗୁର୍ବାଚୋଭଙ୍କୁ କରିଥିଲା ଶ୍ୱାସରୁଦ୍ଧ ! ବସନ୍ତର ତଇଲାରେ ଯେମିତି ପରିଚିତ ରୋଗୀଟିଏ ସଂସ୍ଥିତିବାଦୀ ଦାବାନଳରେ ମରିଗଲା ଆହା ! କମ୍ୟୁନିଷ୍ଟ ଦୁର୍ଗଭଙ୍ଗା ସୈନ୍ୟଙ୍କ ୧୯୯୧ ଅଗଷ୍ଟ କୁପ୍ ବେଳେ ଦେଖାଗଲା ନିରାପଦ କୃଷ୍ଣସାଗର ଦ୍ୱୀପ ମଝିରେ ଗୁର୍ବାଚୋଭ ସପରିବାର ଦେଖୁଛନ୍ତି ଇରୋଟିକ୍



Source: Author, Digitized by PPRACHIN, SOA

ଫିଲ୍ମ 'ଲିକୁଇଡ୍ ସ୍କାଇ' !

ନିଶାଖୋର ସାମ୍ରାଜ୍ୟବାଦୀର ଚଷମା କାଚରେ ପୃଥିବୀ ପୃଥିବୀ ନୁହେଁ; ପୃଥୁଳ କୁଚ ! ବୀରଭୋଗ୍ୟା ବସୁନ୍ଧରା ଦୁଇପାର୍ଶ୍ୱରେ ଦୁଇଟି ପୁରୁଷ ! ପଲିଟ ବ୍ୟୁରୋ ସଭ୍ୟ ଓଲିଗ ସେନିନଙ୍କ ଶପଥ ପାଠ !ଗୁର୍ବାଚୋଭ ଇମର୍ଜେନ୍ସିକୁ ସାମ୍ନା କରିବା ଅପେକ୍ଷା ଅସୁସ୍ଥତାର ଛଳନାରେ ପର୍ଣ୍ଣୋଗ୍ରାଫିକ୍ ଫିଲ୍ମ ଦେଖିବାରେ ଥିଲେ ବେଶୀ ବ୍ୟସ୍ତ !

ଅଶ୍ଳୀଳ ମଣିଷ !

ମଣିଷ ତ ସବୁକାଳେ ଅଶ୍ଳୀଳ ! ତା' ଅଶ୍ଳୀଳ ଦୃଶ୍ୟ ଦର୍ଶନରେ ରହିଲା କେଉଁଠି ଦୋଷ ?

ମାର୍କ୍ୟୁସ୍ ଡି. ସେଡ୍ ପୁଣି ଉଠିଲେ ହସି !

ପ୍ରତ୍ୟକ୍ଷୀଭୂତ ବାସ୍ତବତା ଲାଗୁଛି ଦୁଃସହ୍ୟ, କଠୋର ? ସତ୍ୟ ଅନାୟତ୍ତ, ମାଇଁ ବୟ ! ତମେ ମୃତ୍ୟୁ ଦେଖିଚ ? ପ୍ରଣୟପରି ମୃତ୍ୟୁ ଯନ୍ତ୍ରଣା ବି ସ୍ୱାଦିଷ୍ଟ !

ବିପର୍ଯ୍ୟସ୍ତ କ୍ଷତବିକ୍ଷତ ପରିବ୍ୟାପ୍ତ ଜୀବନରେ ପ୍ରଚ୍ଛନ୍ନ ଓ ଜ୍ଞାନାତୀତ ରହସ୍ୟର କ୍ରମକ୍ଷୟିଷ୍ଣୁ ଲୋଭିଲା ପରାମର୍ଶ !

ପାଉଲା ଜୋନ୍ସ୍ ଅଭିଯୋଗ କରିଛି ତାନି ଫର୍ଗୁସନ ଦ୍ୱାରା କ୍ଲିଣ୍ଟନ ତାକୁ ଡକାଇ ହୋଟେଲ୍‌ର ଚୁପ୍‌ଚାପ୍ ବଖରା ଭିତରେ ତା' ଦେହର ସମ୍ବେଦନଶୀଳ ପ୍ରାଇଭେଟ ପାର୍ଟକୁ ଚୁମି ଚୁମି ଦେଇଥିଲେ ଯୌନ ନିର୍ଯ୍ୟାତନା ! ସାତ ଲକ୍ଷ ପଚାଶ ହଜାର ଡଲାର ପାଇଲେ ତା' ଦୁଃଖ ଘୁଞ୍ଚିଯିବ ? ନାରୀ ନିର୍ଯ୍ୟାତନା ଲୁଚିଯିବ !

ଶୋକଗ୍ରସ୍ତ ଜୀବନ ବି ବେଳେବେଳେ ଦେଖାଯାଏ ବଡ଼ ବ୍ୟଙ୍ଗାତ୍ମକ !

ଫୁଲମାନଙ୍କ ଛାତି ଉପରକୁ ଛକି ଛକି ଲଂଫମାରେ ରାଜନୀତିର ଜଙ୍ଗଲୀ ବାଘ !

ବିଶ୍ୱାସର ନୀରବ ପ୍ରାର୍ଥନା ଛେଳିଛୁଆ ପରି ଅଟକିଯାଏ ବନ୍ଦ ରାସ୍ତାଠି !

ଦୂଷିତ ରସବୋଧକୁ ଖର୍ବ କରିବ ପାଉଲା ? ବୈଚିତ୍ର୍ୟ କାହିଁ ? ପୁଚି ଡାଭିସ୍ ଯେମିତି ବିକ୍ରି କରେ ଫଟୋ ନିଜ ଦେହର ମୁକୁଳା ! ତକ୍ଷକ ସବୁ ଶୋଷି ନେଉଚି ! ଶୋଷି ନେଉଛି ମଣିଷର କଳାତ୍ମକ ଚେତନା ! ଆକାଶ ଓ ସମୁଦ୍ରକୁ ବି ! ଉଦ୍ଦୀପିତ ଜୀବନ ଦୀପ ପ୍ରତି ନିର୍ଲିପ୍ତ ଯଶସ୍ୱୀ ଡି.ସେଡ୍ ଏବଂ ମୁଁ !



Source: Author, Digitized by PPRACHIN, SOA

ନିୟନ୍ତ୍ରଣ ବାହାରେ ଆମରି ପୃଥିବୀ !

ମୁଁ?

ମୁଁ ସମୟର ..... ହ୍ୟୁମାନାଇଁଜେସ୍ନ; ମୁଁ ସ୍ୱୟଂ ଭାଗବତ ! ମୁଁ ନିଜେ ଉପନ୍ୟାସ ! ମଧୁର ଗୋଟିଏ ଗୀତର ଲହର ମୋ ଆଖି ଭିତରେ ନାଚୁଛି ! ପ୍ରକୃତରେ ତାହା ଗୀତ ନୁହେଁ, ହଳ ହଳ ହୋଇ ଦୁଇ ହଳ ଛଂଦାପାଦ !

ଦେହ ଓ ଦେହୀକୁ ମୁଁ କରିଦେଲି ଭିନ୍ନ ଭିନ୍ନ ! ମୃତ୍ୟୁର ଆଉ କି କାମ ?

ଶୁକ, ବୈଶଂପାୟନ ଓ ବେଦବ୍ୟାସ- ସମସ୍ତେ ମୁଦ୍ରିତ ପକ୍ଷ୍ମ ! ପରିବ୍ୟାପ୍ତ ସବୁ ଐଶ୍ୱର୍ଯ୍ୟ ଏଇ ପୃଥିବୀର ! ଇମିତି ଥିବ ! ରହିଗଲା ବି !

ନଗ୍ନପାଦ ପରୀକ୍ଷିତ, ତା'ପାପୁଲିର ପାଚିଲା ପାନପତ୍ର ଖାଲି ! ନଗ୍ନ ନିତମ୍ବ, ନଗ୍ନ ବକ୍ଷ, ନଗ୍ନ କଂଠ ଓ ନଗ୍ନ ମସ୍ତକ ! ବହୁମୂଲ୍ୟ ବୈଦୁର୍ଯ୍ୟ, ମାଣିକ୍ୟ ଓ ହୀରକ ଶୋଭିତ ମୁକୁଟ ନାହିଁ ! ସୁବର୍ଣ୍ଣ ଜରିରେ ବୁଣା ଧଡ଼ି, ବୁଂଦା ବୁଂଦା ହୀରକ ଲେପିତ କାହିଁ ତା'ପରିହିତ ପାଟ କୌଶେୟ ? ଏବେ ଲଙ୍ଗଳା ଦେହ ! ମଲା ବେଳେ ଦେହ ଭିତରେ ଛପିଯାଏ ପୁରୁଷର ପୌରୁଷାଙ୍ଗ ! ଅର୍ଦ୍ଧ ଅନାବୃତ୍ତା ଲୀଳାବତୀ ସ୍ୱର୍ଦ୍ଧିତ ବକ୍ଷୋଜା ଯୂଥ ସୁବାସିତ ସ୍ନିଗ୍ଧ ଶୀତଳ ପୀତ ଲୋହିତ ପଦ୍ମ ଓ କଦମ୍ବ କେଶର ତା'ଚର୍ମରେ କେହି ତ କରୁନାହାନ୍ତି ଲେପିତ ! କାମ-କାମନାରେ ଭ୍ରମରପରି ସିଏ ଆଉ ଲୀଳା ତୃଷିତ ହୋଇ ଯାଉ ନାହିଁ ! ସଂଗୀତପରି ଫେରି ଯାଉଛି ! ସ୍ୱର୍ଦ୍ଧିତ ଆଲୋକ ଅନ୍ଧକାରକୁ ସମର୍ପିତ କରି ଦେଇଛି ସବୁ କାମ ଓ ଅର୍ଥ ! ଏବେ ଲଙ୍ଗଳା ମେଦ ! ଆଉ ଭୋଗ କରିବ ଦେହ ! କର, କର ! କେତେଟା ଫ୍ଲାଟ୍ କିଣିବ, ଆଉ କେତୋଟି ପ୍ଲଟ ? ଲକର୍‌ରେ ଆଉ କେତେ ରଖିବ ? ରଖ, ରଖ !

ଭାନ୍ ଗୋଘ୍‌ର ଧଳା କାନ୍‌ଭାସ ଉପରେ ହସିଦେଲା ଫିକ୍‌କିନା ଗୋଟିଏ ନୀଳ ଗୋଲାପ !

ପ୍ରିୟଙ୍କା ଗାନ୍ଧିପରି ହେଲିକପ୍ଟର ଦ୍ୱାରରୁ ସମସ୍ତଙ୍କୁ ହାତ ହଲେଇଲା ପରୀକ୍ଷିତ !

ଆ-ସୁ-ଛି.... ବାଏ.... ହେ ମୋର ପ୍ରିୟ ପ୍ରଜାବୃଂଦ, ପୁଣି ଦେଖା ହେବ !

ପୁଣି ଦେଖା ହେବ !

.... ଥରେ ମଲେ, ଆଉ ଥରେ କ'ଣ ଏଇ ଦେହ ପାଇବ ? ? ଏଇ ଜୀବନ ମିଳିବ ? ?

□□□



Source: Author, Digitized by PPRACHIN, SOA

# ମାଧ୍ୟାକର୍ଷଣ, ଲବଙ୍ଗ ଫୁଲ ଓ ତ୍ରିଭୁଜ

ଇଂଲିଶ୍ ଗଳ୍ପର ପ୍ରାଚୀନ ସୋର୍ସ କାଥୋଲିକ୍ ଚର୍ଚ୍ଚ ସାହିତ୍ୟ।

ଏହାର ସ୍ରୋତ ଦୁଇଟି। ଗୋଟିଏ idea of conveying a moral ଓ ଅନ୍ୟଟି ପ୍ରଦାନ କରେ aesthetic enjoyment। ସ୍ୱାଦ ଓ ଫେସନର ପରିବର୍ତ୍ତନ ସହ ଗଳ୍ପର ଜନ୍ମ ଏକ ସୂତ୍ରରେ ଆବଦ୍ଧ।

ଏଞ୍ଜେଲସ୍ ଲେଖିଛନ୍ତି, 'ହିଷ୍ଟ୍ରି ଇଜ୍ ନଥିଂ ବଟ୍ ଦି ଆକ୍ଟିଭିଟି ଅଫ୍ ମ୍ୟାନ୍ ପରସୁଇଂ ହିଜ୍ ଏମ୍ସ' (କାର୍ଲ ମାର୍କ୍ସ ଏଣ୍ଡ୍ ଫ୍ରେଡ୍ରିକ୍ ଏଞ୍ଜେଲସ୍ କଲେକ୍ଟେଡ ୱାର୍କ୍ସ, ୪ର୍ଥ ଖଣ୍ଡ, ପୃଷ୍ଠା ୯୩)। ମଣିଷକୁ ତାର ଲକ୍ଷ୍ୟ ସଚେତନ କରାଇବା ହେଲା ଇତିହାସର କାମ। ସେଇଭଳି 'କଲଚର୍ ସୁଡ୍ ବି ସିନ୍ ଆଜ୍ ଆନ୍ ଅଣ୍ଡରଷ୍ଟାଣ୍ଡିଙ୍ଗ୍ ଅଫ୍ ଦିସ୍ ଆକ୍ଟିଭିଟି, ଫର୍ ମ୍ୟାନ୍ସ ଆକ୍ଟିଭିଟି, ଆଜ ହିଷ୍ଟ୍ରି, କହନ୍ତି କେ.ଏମ୍. ଡୋଲଗୋଭ (କଲଚର ଏଣ୍ଡ ସୋସିଆଲ ପ୍ରୋଗ୍ରେସ୍ ପୃଷ୍ଠା ୧୫)। ଇତିହାସ ପରି ସଂସ୍କୃତି ମଧ୍ୟ ସଚେତନ କରାଇବ ମଣିଷକୁ ତାର ସାମାଜିକ ସ୍ଥିତି।

ତାର ଲକ୍ଷ୍ୟ ପ୍ରବର୍ତ୍ତାଇବା ମଧ୍ୟ ସଂସ୍କୃତିର କାର୍ଯ୍ୟ।

ସଂସ୍କୃତି ଓ କବିତାର ପୃଥିବୀ – ୩୯ / ନକୁଳ ଚଂଦ୍ର ସାହୁ



Source: Author, Digitized by PPRACHIN, SOA

ନିଃସ୍ତରଙ୍ଗ ଶୂନ୍ୟତା ଉପରେ ତରଙ୍ଗ, ଚେତନାର ପ୍ରଥମ ଉନ୍ମେଷ !!

ତରଙ୍ଗ...ତରଙ୍ଗ ପରେ ପରସ୍ତ ପରସ୍ତ ବାଷ୍ପିୟର ବିବର୍ତ୍ତନ, ଜଳର ସ୍ୱରୂପ ! ତା' ପରେ ଜଳ ଓ ଜେଲି... ବସ୍ତୁର ଶୈଶବ ! ଗ୍ୟାସୀୟ ପିଣ୍ଡର ଛିନ୍ନାଂଶ ମଧୁ କୈଟଭର ମେଦ ? ଜନ୍ମ ନେଇଥିଲା କୁମାରୀ ମେଦିନୀ ! ବୟସ ଓ ବର୍ଷର ପରସ୍ତସବୁ ତାକୁ ଦିନେ ତିଆରିଲେ ଯୁବତୀ ! ସମୁଦ୍ର ବସନେ ଦେବୀ ପର୍ବତ ସ୍ତନ ମଣ୍ଡଳେ ବିଷ୍ଣୁ ପତ୍ନ୍ୟା ! ନମସ୍ତୁଭ୍ୟମ୍ !

କମନୀୟ କାନ୍ତି ! ସମୁଦ୍ର ରଙ୍ଗର ବସ୍ତ୍ର ! ସବୁଜ ବସ୍ତ୍ରାବୃତ୍ତ ଗିରିକୁଚ ଥିଲା ସୁତୁଙ୍ଗ ଅପୂର୍ବ ! ଶ୍ୟାମଳ ଆକାଶର ସଂଯୋଗରେ ସେଇ ଅପୂର୍ବା ଅପରୂପା ହେଲେ ଗର୍ଭବତୀ ! 'ଦ୍ୱିଧା କୃତ୍ୱାତ୍ମନୋଦେହମ୍ ! ଅର୍ଦ୍ଧେନ ପୁରୁଷୋଽଭବତ-ଅର୍ଦ୍ଧେନ ନାରୀ' !

ପାଚିଲା ପ୍ରଥମ ଫଳ ହେଲା ଦୁଇଫାଳ !

ଜେଲିରୁ ଜୀବ ଓ ଜୀବ ସମୂହକୁ ନେଇ ଜଗତ ! କୁଲ୍ଲୁକ ସ୍ୱପ୍ନ ଦେଖିଲେ : ଯଂ ନିର୍ମିତବାନ୍ ତଂ ମାଂ ମନୁଂ ଜାନିତ !

ବିରାଜ ଓ ମାତାମନୁ ! ପୃଥିବୀର ପ୍ରଥମ ପ୍ରେମିକ ଓ ଆଦ୍ୟ ପ୍ରଣୟିନୀ ! ଆଦାମ ଓ ଇଭ !

ମନୁରୁ ମରୀଚି, ଅତ୍ରି ! ଅଙ୍ଗିରା, ପୁଲସ୍ତ୍ୟ !

ପୁଲହ, ପ୍ରଚେତା, ବଶିଷ୍ଠ, ଭୃଗୁ ଓ କନିଷ୍ଠ ନାରଦ, ନ'ଟି ତନୟ ! ତନୁବାଟେ ସ୍ତନ୍ୟସବୁ ଝୁଣି ଗଲେ ଯୁବତୀ ଇଭର ଏବଂ ସେମାନେ ବି ଦିନେ ଆଦାମ ପରି ଟୋକା ହୋଇ ହେଲେ ଠିଆ ! ସେମାନଙ୍କ ପୁତ୍ର ହେଲେ ସାତମନୁ ଓ ଅନେକ ମହର୍ଷି ! ମହର୍ଷି ଅନେକ ମଧ୍ୟରୁ ଜଣେ ହେଲେ ଜନକ ଓ ଜାତ କଲେ କଶ୍ୟପ !

କଶ୍ୟପସ୍ତୁ ଇମା ପ୍ରଜାଃ !

ଦକ୍ଷକନ୍ୟା ତ୍ରୟୋଦଶ ! ଅଦିତି, ଦିତି, ଦନୁ, କାଲା, ଦନାୟୁ, ସିଂହିକା, କ୍ରୋଧା, ପ୍ରଧା, ବିଶ୍ୱା, ବିନତା, କପିଳା, କଦ୍ରୁ ଓ ମନୁ ! ସବୁଯାକ କୂଳରେ ଜୁଆର ପିଟୁଥିବା ବଢ଼ିଲା ନଦୀ !

ବନଫୁଲରେ ଗଭାମଣ୍ଡି ଝରଣା ଜଳରେ ନିଜ ପାଦର ପଦ୍ମପୁଷ୍ପକୁ ଆନ୍ଦୋଳିତ କରେ ପ୍ରତି ସନ୍ଧ୍ୟାରେ ଅଦିତି ! ତା' ପଦାଙ୍ଗୁଷ୍ଠିରୁ ଉଠେ ଚନ୍ଦ୍ର ମନ୍ଦ ମନ୍ଦ ସାରା ତନୁ ! ଆତ୍ମରତି ବିହ୍ୱଳା ସାରା ରାତି ଶୋଇଯାଏ ଚିତ ହୋଇ ଚନ୍ଦ୍ର କିରଣରେ କୌଣସି କୌଣସି ଦିନ



Source: Author, Digitized by PPRACHIN, SOA

ସେଇ ନିର୍ଝରିଣୀ କୂଳେ କେଉଁ ଏକ ମସୃଣ ଶିଳା ଶଯ୍ୟାରେ ! ଚକ୍ଷୁ ପତା ତଳେ ତା'ର ଭିଜା ଭିଜା ଅର୍ଦ୍ଧବିକଶିତ ପୁଷ୍ପପରି ନମ୍ର ଓ କମ୍ର ଅର୍ଦ୍ଧୋତ୍‌ଥିତ ସ୍ୱପ୍ନର ଚନ୍ଦ୍ରମା ! ମନର ଜଳରେ ଚହଲେ ତା' ଛାଇ ! ନ ବି ଚହଲେ: ସତେ କିଏ ଆସନ୍ତା କି, ଦୋଦୁଲ୍ୟମାନ ତା' ଇଚ୍ଛାର ଜଳକୁ ଭରି ଦେଇ କନକ ଗରାରେ ନେଇଯା'ନ୍ତା ! ଶୁଷ୍କ ମାଟି ଚିପି ଧରିଥିବା ତୀକ୍ଷ୍ଣ ଓ ଶକ୍ତ ଚେର ମୂଳକୁ କଳସ କଳସ ! ସେ ସମଗ୍ର ଭାବେ ଉଡ଼ିଯାଇ ଶୋଷି ହୋଇଯା'ନ୍ତା ଚେରବାଟେ ବୃକ୍ଷ ଭିତରକୁ !

ସୁନାରୀ, ଶାଳ ଓ ଚନ୍ଦନ ବନରେ ଭଉଣୀସବୁ ଲୁଚକାଳି ଖେଳନ୍ତି ମଝି ଦ୍ୱିପ୍ରହରରେ ! ଅଦିତି ପରେ ଦିତି ପାଳି ଆସେ, ଖୋଜିବାର ବାଜି ! ଦିତି ବୁଜିଦିଏ ଆଖି ! ଭଉଣୀସବୁ ଛପିଗଲା ପରେ କସ୍ତୁରୀ ମୃଗପରି ସେ ଖୋଜେ ପ୍ରତ୍ୟେକଙ୍କୁ ! ସୁନାରୀ ଓ ଶାଳବନ ଟପି ବନ ହରିଣୀସବୁ ରମ୍ଭାବନ ଓ ଦ୍ରାକ୍ଷାକୁଞ୍ଜ ଭିତରେ ଛପି ଯାଇଥାନ୍ତି ! ଏଣେତେଣେ ଧାଇଁ ଧାଇଁ ସ୍ୱେଦସିକ୍ତ ବକ୍ଷୋଜରୁ ତା'ର ଖସି ପଡ଼େ ବଳ୍‌କଳ ! ଦିତି ମୁହଁ ପଳାଶ ଜ୍ୟୋତି ହୋଇଆସେ ହ୍ରାସ ! ଝରଣାରୁ ଦୁଇ ଆଞ୍ଜୁଳା ଜଳ ଶୋଷି ନେଇ ମୋଡ଼େ ଦ୍ରାକ୍ଷା କୁଞ୍ଜକୁ ! ମନର ଦ୍ୱାପି ତା'ର ଆପେ ଆପେ ଖୋଲି ଯାଇ ଖସି ପଡ଼େ ତଳକୁ ! କାମନାର ବନ ଜଳେ ମଳୟର ମଧୁ ହବନରେ ! କୁରଙ୍ଗୀର ନେତ୍ର ଦୁଇ ଏଣେ ତେଣେ ଛନଛନ ହୋଇ ଚାହେଁ ! ଖୋଜେ ?

କେହି ତ ଆସୁନି !

କାହା ପାପୁଲିର ହାଲୁକା ସ୍ପର୍ଶ ବୁଜି ଦେଉଛି ତା' ଆଖି ଦୁଇଟି !

କିଏ ?

କୋରକିତ କନକ କୁଚ ମଣ୍ଡା ଉପରେ କାହା ସ୍ପର୍ଶର ନରମ ପଳାଶପତ୍ର ! ଇସ୍ କି ଶୀତଳ ?

କାହାର ଏଇ ସୁହାଗିଆ ଆଶ୍ଳେଷର ଉଷ୍ମ ମିନତି !

ସିଏ ହଜିଯିବ !

ଆମ୍ରକୁଞ୍ଜ ତଳେ ସିକତା ଶେଯରେ କିଛି କ୍ଷଣ ଚକ୍ଷୁ ବୁଜି ଶୋଇଯିବ ! ସମୟ ତ ନିର୍ଲ୍ଲଠଟା, ଯାଉ, ମନବୋଧ କରି ତାକୁ ଆଉଁସି ଦେଇ ଯାଉ ! ସିଏ ଆଦୌ ବୁଝିବନି ତା' ବ୍ୟାକରଣ !

ହଠାତ୍ ପଛରୁ ଶୁଭିଲା ଦନୁ ଓ କପିଳାର ଉଚ୍ଛକିତ ହସ ! ସେ ଘୁଞ୍ଚି ଗଲା ଟିକିଏ


Source: Author, Digitized by PPRACHIN, SOA

ପଛକୁ ! ଗୋଟିଏ ଚନ୍ଦନ ଗଛ କରକୁ ! ସେଇଠୁ ତା' ଦୃଷ୍ଟିର ତୀର ସନ୍ଧାନ କଲା ଶାଳ ଓ ସାହାଜ ବୃକ୍ଷ କରରେ ଛପି ଯାଉଥିବା ତା'ର ଦୁଇ ଭଗ୍ନୀଙ୍କୁ ! କପିଳାର ବାମଭାଗ କୋରାଜିତ ବକ୍ଷ ମଣ୍ଡଳକୁ କୌତୁକରେ କ୍ଲେଶ ଦେଇ କରପଦ୍ମରେ ଚାପିଦେଉଛି ଦନୁ ଓ ଦନୁର ରୋମାବଳୀ ତଳେ ଟାଆଁସ ଶୀତଳ କୃଷ୍ଣ ଶୈବାଳ ଦଳକୁ ପାପୁଲିରେ ମୁଠେଇ ଭିଡ଼ି ଆଣୁଛି କପିଳା ସାମ୍ନାକୁ ! ଦନୁ ଚିତ୍କାର କରି ପୁନଃ ଆଘାତ କରିଛି କପିଳା କୁଚକଳସ ପଳାଶଦଳ ମୁଣ୍ଡରେ ! ଅଦୂରସ୍ଥ ବାଂଶବନରୁ ଭାସି ଆସୁଛି ବିଶ୍ୱାର ପବନ ପରି ଖିଲି ଖିଲି ହସ ! ତା' ବାହୁ ମୃଣାଳ ତଳେ କକ୍ଷ କନ୍ଦିରେ ବିନତା ଭରି ଦେଉଛି ବୋଧେ ନିଜର ବିଷି ଆଙ୍ଗୁଠି· ଗୋଲାପ କଢ଼ ପଟେ ! ଦୋଦୁଲ୍ୟମାନ ବାଂଶବୃକ୍ଷର ଉଚ୍ଛୁଳା ସ୍ୱନ ପରି ସେମାନେ ବି ହେଉଥିଲେ ଉଚ୍ଛୁଳା ଓ ବିଶୃଙ୍ଖଳା !

'ତୁ ଭାରି ଛତରୀ !'

'ତୁ ?'

'ପୁଚୁକି ଗାଲି !'

ଗୋଟିଏ ଖୁବ୍ ବଡ଼ ବାଂଶକୁଞ୍ଜ ତଳେ ଆଉ ଦୁଇ ଭଗ୍ନୀ କ୍ରୋଧା ଓ ପ୍ରଧା ! ସବୁତକ ଫୁଟା ଫୁଲ ! ଗୋଟା ଗୋଟା ସକାଳପରି ଲୋଭନୀୟ, ସେମାନଙ୍କୁ ସାଇତିବ କିଏ ?

ସମୟପରି ଝଲମଲ ପୁରୁଷାଣିଆ ସ୍ରୋତସ୍ୱତୀ ! ଯୁବତୀପରି ସୁଶ୍ରୀ ଓ ପବିତ୍ର ଯେମିତି ତୁଳସୀ ! ତଟରେ ତା' ତର୍ପଣରତ ଜଣେ ପୁରୁଷ ! ଚନ୍ଦ୍ରପରି ଶାନ୍ତ, ସୂର୍ଯ୍ୟପରି ଉଦୀପ୍ତ ଓ ମଳୟପରି କି ଶୀତଳ ଲାଗୁଥିଲା ତାଙ୍କ ଦର୍ଶନର ସ୍ୱାଦ !

ପୁରୁଷ ଦୃଷ୍ଟିର ସ୍ପର୍ଶରେ ଆହତ ହେଲା ହରିଣୀ !

(ଇମିତି ବି ଦିନେ ତ କାର୍ଲର ଦୃଷ୍ଟିର ଆଲିଙ୍ଗନରେ ଲାଜକୁଳୀ ଲତାପରି ସଂସ୍କୃତି ପଡ଼ିଥିଲା ଝାଉଁଳି ! କାର୍ଲ ତ ତା' କେହି ନୁହେଁ ! ଅଥଚ.... କାହିଁକି କେଜାଣି ସେ ତା'ର ବୋଧ ହୋଇଥିଲା ଅତି ଆତ୍ମୀୟ ! ନିଜ ମାତା, ପିତା, ଭ୍ରାତା ଓ ଭଗ୍ନୀଙ୍କଠୁ ବି ! ହାୟ, ପ୍ରେମ ଜାଣେ କି କିମିଆ !!)

ଲୋହିତ ଆଭାର ପଟ୍ଟବସ୍ତ୍ର ବିଭୂଷିତ ହେଲା ଅଦିତି !

କିଏ ଇଏ ? କିଏ ?.... ଅଚିହ୍ନା ଅତିଥି ଦେବତା....! ନୀଳ ନୀଳ ଫୁଟା ଅପରାଜିତା ପୁଷ୍ପ ପରି ଦୃଷ୍ଟି ତାଙ୍କ କି ତଟକା ! ଓଷ୍ଠ ଦୁଇ ଲୋହିତ କିଶଳୟପରି ମୃଦୁ କମ୍ପିତ ! ଆଜାନୁ ଲମ୍ବିତ ହସ୍ତ ଗୌର ଯୁବକ !



Source: Author, Digitized by PPRACHIN, SOA

'ତୁମେ ? କଶ୍ୟପ ମୁଁ.... !' ପରିଚୟର କଦମ୍ବ ଫୁଟିଲା !

'ଅଦିତି ! ଦକ୍ଷ ଦୁହିତା !' କୋକିଳ କି କହୁଅଛି କଥା !

'ତୁମ ଦର୍ଶନ ମୋତେ ଦାନ କରିଛି ଆନନ୍ଦ !' ଆଖିରେ ସଂଚରିଛି ଲୋଭ !

'ହୁଏତ....' ଦ୍ୱଂଦର ଝୁଲଣାରେ ଝୁଲୁଚି କଦମ୍ବ !

'ତୁମେ କ'ଣ ଅପ୍ରୀତ ?' କୁମାରୀ ମଳୟକୁ ପ୍ରଶ୍ନ କରିଛି ମେଘ !

'ନା, ନା ଏହା ମୋ ପରମ ସୌଭାଗ୍ୟ ମଧୁ !'

ବସନ୍ତ ଋତୁର ବିଦୂଷକ ବାୟୁ ବନସାରା ବୁଣିଗଲା ଦାରୁଚିନି ବାସ୍ନାର ପୁଷ୍ପ !

କ୍ଷତାକ୍ତ ଦେବଦାରୁ କ୍ଷୀରର ମହମହ ବାସ୍ନା ଦୁଇ ମନ ଅରଣ୍ୟ ଭିତରେ ସୃଷ୍ଟି କଲା ତୀବ୍ର ଆତ୍ମୀୟତା !

'ତୁମକୁ ମୁଁ ସ୍ୱୀକାର କରୁଛି ଅଦିତି !'

ଉତ୍ତପ୍ତ ପୃଥିବୀ ଯେମିତି ଆଦର କରେ ସଜଳ ମେଘକୁ ! ସମୀଧ ଯେମିତି ସ୍ୱାଗତ କରେ ସୁଧା ଶ୍ରୁବକୁ !

'ମୁଁ ମାଗି ନେବି ତୁମକୁ ଆର୍ଯ୍ୟ ଦକ୍ଷଙ୍କଠୁ !'

'ଖାଲି ମୋତେ ଏକା କାହିଁକି ପ୍ରଭୋ, ମାଗି ନିଅନ୍ତୁ ତ୍ରୟୋଦଶଯାକ ଭଗ୍ନୀଙ୍କୁ !'

'ନେବି !'

ପ୍ରୀତିର ମହାସିନ୍ଧୁ ସରିତ ତ୍ରୟୋଦଶଙ୍କୁ ସମ୍ପର୍କର ଲବଣ ନୀରରେ କରିଦେବ ସତ୍ତାଶୂନ୍ୟ ! ଆକାଶ ଓ ସମୁଦ୍ର ଦେଖା ଯିବେ ଏକ !

ଦେବୀ, ତୁମେ ହେବ ସହସ୍ର ଓ ମୁଁ ହେବି ଭଗ୍ନାଂଶ ! ଆମ ଆନନ୍ଦରୁ ଜାତ ହେବେ ଯେଉଁମାନେ ସେମାନେ ହେବେ ଜୀବ ! ଆନନ୍ଦ ହେତୁ ହେବେ ଜୀବିତ ଓ ଜୀବନ୍ତ ଏବଂ ଆନନ୍ଦ ପ୍ରୟନ୍ତ୍ୟାଭିସଂ ବିଶନ୍ତୀତି ! ଏଇ ଆନନ୍ଦ ହେତୁ ବି ହେବେ ମୃତ !

ସୂର୍ଯ୍ୟପରି ସଂସାରକୁ ନିୟନ୍ତ୍ରଣ କରିବ ଆନନ୍ଦ !

ତେରୋଟି ନାରୀଙ୍କ ପାଣିପାଗ ପୃଥିବୀକୁ କରିଦେଲା ସବୁଜ ! ନୂଆ ଫୁଲ, ନୂଆ ଫଳ ଓ ନୂଆ ବୃକ୍ଷରେ ପୃଥିବୀ ପିନ୍ଧିଲା ନୂଆ ପାଟ ! ରହସ୍ୟର ବନ୍ଦ ଲଫାପା ମୁହଁ ଫିଟିଫିଟି ଆସିଲା !



Source: Author, Digitized by PPRACHIN, SOA

ଯେଉଁଠୁ ସୃଷ୍ଟି, ସେଇଠୁ ପ୍ରଳୟ !

ଯେଉଁଠାରୁ ଜନ୍ମ, ସେଇଠି ମୃତ୍ୟୁ ଓ ସେଇଠି ବି ମୁକ୍ତି !! ମୃତ ଆଟମ୍‌ର ଫିଜିକ୍ସ !

ଯଃ ସ୍ତନ ପୂର୍ବ ପୀତସ୍ତଂ ନିଷ୍ପୀଡ୍ୟମୁଦମଶ୍ନୁତେ ! ଯସ୍ମାଜ୍ଜାତୋ ଭଗାତ୍ ପୂର୍ବ ତସ୍ମିନ୍ନେବଭଗେ ରମନ୍ ! ଯା ମାତା ସା ପୁନର୍ଭାର୍ଯ୍ୟା , ଯା ଭାର୍ଯ୍ୟା ମାତରେବ ହି !

.... ବଡ଼ ବିଚିତ୍ର ସଂସାରର ଏ ଅଶୋକ ଚକ୍ର ! ସକାଳ ଓ ସନ୍ଧ୍ୟା- ସବୁ ଏଠି ମିଛ ! ଦିବସ ଓ ରାତ୍ରି, ପୃଥିବୀ ନିଜ ଅକ୍ଷ ଚଉପାର୍ଶ୍ୱ ଘୂର୍ଣ୍ଣନ ଛାଇ ଆଲୁଅର ଏ ଲୀଳାୟିତ ସ୍ଥିତି ! ଠିକ୍ ସେମିତି ଯେଉଁ ସ୍ତନ ପୂର୍ବରୁ ପାନ କରି ଧାରିତ ହୋଇଛି ଜୀବନ ଏବଂ ଘଟିଛି ଶରୀର ବୃଦ୍ଧି, ଯୌବନରେ ସେହି ସ୍ତନର ପୀଡ଼ନରେ ମିଳୁଛି ତୃପ୍ତି ! ଯେଉଁ ଯୌନାଙ୍ଗରୁ ଜନ୍ମ ସେହି ଯୌନାଙ୍ଗରେ କରୁଛି ରମଣ ! ଏକ ଜନ୍ମରେ ଯିଏ ମାତା ଅନ୍ୟ ଜନ୍ମରେ ସିଏ ହୋଇଯାଏ ଭାର୍ଯ୍ୟା ଏବଂ ଯିଏ ଭାର୍ଯ୍ୟା ସିଏ ପରଜନ୍ମରେ ହୋଇଯାଏ ମାତା ! ପିତା ହୁଏ ପୁତ୍ର ଓ ପୁତ୍ର ହୋଇଥାଏ ପିତା !

ବିସ୍ମୟକର ଆର୍ଯ୍ୟ ସାଂସାରିକ ଥିଓରିଟା !

ଜନ୍ମ ହେଲେ ଅଦିତିଙ୍କଠୁ ଆଦିତ୍ୟ ଦେବଗଣ ! ଦିତିଙ୍କଠୁ ଦୈତ୍ୟବୃନ୍ଦ ! ଦନୁର ଜରାୟୁରୁ ଦାନବ ! ସିଂହିକା ତନୟ ହେଲେ ସିଂହିକେୟ ଏବଂ ମନୁଙ୍କଠୁ ମାନବ !

ଗୋଟିଏ ଦୀପରୁ ପ୍ରଦୀପିତ ହେଲା ଅସଂଖ୍ୟ ଦୀପାଳି ! ସହସ୍ର ଆଲୋକମାଳା ଆକାଶ, ପାତାଳ, ପୃଥ୍ୱୀ; ଗୋଟିଏ ଆଲୋକର ବହୁବିଧ ପ୍ରକାଶ ! ଖଲ୍ୱିଦଂ ବ୍ରହ୍ମଃ ! ସୃଷ୍ଟିର ପୁରୁଣା ପୃଷ୍ଠା, ସ୍ମୃତି ଓ ଶ୍ରୁତିର କଳାପଟାରେ ପଟାପଟା; ତାକୁ ଲିଭେଇ ପାରିନି ସମୟର ବାଘ !

'.....ଦେବାସ୍ତେଽଦିତ୍ୟାଂ କଶ୍ୟପାତ୍ ପୁନଃ !'

ଚାକ୍ଷୁଷ ମନ୍ୱନ୍ତର ! ଯେଉଁ ଦେବବୃନ୍ଦ ଥିଲେ ତୃଷିତ ପୁନଃ ଅଦିତିଙ୍କଠୁ ହେଲେ ପ୍ରସୂତ ! କଶ୍ୟପଙ୍କ ଜ୍ୟେଷ୍ଠ ପୁତ୍ର ଦ୍ୱାଦଶ ! ବିଷ୍ଣୁ, ଶୁକ୍ର, ତ୍ୱଷ୍ଟା, ଦାତା, ଆର୍ଯ୍ୟମା, ପୂଷା, ବିବସ୍ୱାନ, ସବିତା, ମିତ୍ର, ବରୁଣ, ଭଗ ଓ ଅଶୁ- ଦ୍ୱାଦଶ ଭ୍ରାତା ! ଦିତିଙ୍କ ଦୁଇ ତନୟ ହିରଣାକ୍ଷ ଓ ହିରଣ୍ୟକଶିପୁ ! ହିରଣ୍ୟ କଶିପୁର ପୁତ୍ର ଚାରୋଟି ! କନିଷ୍ଠ ପ୍ରହ୍ଲାଦ ! ପ୍ରହ୍ଲାଦ ପୁତ୍ର ବିରୋଚନ ଏବଂ ବିରୋଚନ ପୁତ୍ର ବଳି ! ବଳି ଏକଶତ ପୁତ୍ରଙ୍କ ଜନକ ଓ ବାଣ ତା'ର ଜ୍ୟେଷ୍ଠ ପୁତ୍ର !

ବିନତାଠୁ ହେଲେ ଜାତ ବିଷ୍ଣୁ ପ୍ରିୟ ଦୁଇ ପୁତ୍ର ଅରୁଣ ଓ ଗରୁଡ଼ ! କଦ୍ରୁଙ୍କ ଠାରୁ କାଦ୍ରବେୟ ସହସ୍ର ଶେଷ, ବାସୁକୀ, ତକ୍ଷକ ଓ ସର୍ପ ଅନେକ !



Source: Author, Digitized by PPRACHIN, SOA

ଗୋଟିଏ ପିତା, ମାତା ଅନେକ, ପରସ୍ପର ଏକ ରକ୍ତର ବହୁଧାର, ଭାଇ ଭାଇ, ଅଥଚ ଶତ୍ରୁ ଚିରକାଳ ! ଶତ୍ରୁତାର ଅନ୍ତ ଦିନେ ସମାପ୍ତ କରିଦେଲା ଦିତିଙ୍କ ପୁତ୍ରମାନ ! ପୁତ୍ରହରା ଅଶ୍ରୁଳା ନାରୀଟିର କି କରୁଣ କ୍ରନ୍ଦନ ! ଧୈର୍ଯ୍ୟ ଅଟଳ ରହିପାରିଲେନି କଶ୍ୟପ ! ସାନ୍ତ୍ୱନା ଓ ଆଶ୍ୱାସନାରେ ଦୋଳି ଉଠିଲା ତାଙ୍କ ଶାନ୍ତ ଓଷ୍ଠ !

'ଦିତି, କାନ୍ଦନା; ଛି ! ସେମାନେ ବି ତୁମ ପୁଅ ! ନିଜକୁ ସାନ୍ତ୍ୱନା ଦିଅ ! ତୁମେ ତ ବଂଧ୍ୟା ଲତା ନୁହଁ; ପୁଣି ଥରେ ପଲ୍ଲବିତ ହୁଅ ! ପଛ ସମୟ ହୁଏ ସ୍ମୃତି; କେବେ ଫେରିଛି କି ? ସମୟର ବ୍ୟାକରଣରେ ନଥାଏ ତୃଟି !'

'ଫଳପ୍ରସୂ ଜନ୍ମ ମୋର ଧିକ୍ ପ୍ରଭୁ ! ଗୋଟିଏ ବି ରହିଲେନି କେହି !'

'ତୁମକୁ ମୁଁ ଆଉଥରେ ସୌଭାଗ୍ୟ ଦେବି ! ତୁମ କିଶଳୟ ଲୋହିତ ଓଷ୍ଠଧାରଣ କରିବ ତପ୍ତ ତାମ୍ର ଆଭା ! ତୁମ ଚକ୍ଷୁ ଯୁଗ୍ମରେ ଲେପି ଦେବି ଚନ୍ଦ୍ରିକାର ଶାନ୍ତ ଶୀତଳ ପ୍ରଭା ! ହସର ପୁଷ୍ପରେ ମନର ମଥାନ ତୁମ କରିବ ମହୋତ୍ସବ ! ଏଇ ମୋର ପ୍ରତିଶ୍ରୁତି ନିଅ.... !'

ଦିତିର ସାଦା କାଗଜପରି ସଫେଦ୍ ପାପୁଲିରେ ପୌରୁଷ ବିଜଡ଼ିତ ନିଜ ପାପୁଲିର ଶକ୍ତ ସ୍ପର୍ଶ ସ୍ଥାପନ କଲେ କଶ୍ୟପ !

'ମୋ ପୁତ୍ର ହେବ ଇନ୍ଦ୍ରହନ୍ତା ?'

'ତଥାସ୍ତୁ ! ପାଳନ କର ପୁତ୍ରବ୍ରତ ! ପୂର୍ଣ୍ଣ ହେବ ଶୂନ୍ୟ ମନସ୍କାମନାର ପାତ୍ର !'

ସୁନୀଳ ନୟନା ନାରୀ ସ୍ୱପ୍ନରେ ଭିଜେଇଛି ତା ଦୁଇ ଡୋଳା : ସଶକ୍ତ ବଳିଷ୍ଠ ଗୋଟିଏ ପୁଅ ! ତା' ପଦପଙ୍କଜ ତଳେ ଢାଳୁଛି ପ୍ରଣିପାତ ! ମାଗୁଛି ମୃତ୍ୟୁଞ୍ଜୟୀ ଆଶିଷ! ସେ ହନନ କରିବ ବଜ୍ରହସ୍ତକୁ ! ଜ୍ୟେଷ୍ଠ ଭ୍ରାତମାନଙ୍କ ହତ୍ୟାର ନେବ ପ୍ରତିଶୋଧ ! ମୋ ନୟନ ମଣି ! ଧନରେ...

ବ୍ରତପୂର୍ଣ୍ଣ ହେବାକୁ ଅଛି ଆଉ ମାତ୍ର ତିନିଦିନ ! ସନ୍ଧ୍ୟାବ୍ରତ ଓ ମନ୍ତ୍ରପାଠ ହେଲା ଶେଷ ! ଅବଶ ତନୁ ପୁଷ୍ଟ ଗର୍ଭର ଭାର କରୁଛି କ୍ଳାନ୍ତ; ନିଦ୍ରାପୂର୍ବ ପଦଧୌତ ପୂର୍ବରୁ ଚକ୍ଷୁ ଦିଓଟି ହୋଇଗଲା ବନ୍ଦ ! ହେଲା ବ୍ରତ ଭଙ୍ଗ ! ଅଧୌତ ପଦ ଦେଇ ଇନ୍ଦ୍ର ପ୍ରହାର କଲା ବଜ୍ର ! ଗର୍ଭସ୍ଥ ଶିଶୁ ହେଲା ଅଣଚାଶ ଖଣ୍ଡ ! ଦୀପ୍ତ ତେଜ ପ୍ରଚଣ୍ଡ ମରୁତ୍ ! ଜନନୀ ଗର୍ଭ ସମୁଦ୍ର ହେଲା ବିକ୍ଷୁବ୍‌ଧ! ଅପଞ୍ଚୀକୃତରୁ ପଞ୍ଚୀକୃତ ଭୂତ !

ଆକାଶ ! ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ ଓ ଜଳରୁ ସୃଷ୍ଟି ହେଲା ପୃଥିବୀ !

'ଆପସ୍ତୁଦେବା ବାଳାନାଂ ଦିବି ଦେବା ମନୀଷିଣାମ୍ !'



Source: Author, Digitized by PPRACHIN, SOA

ସ୍ୱଚ୍ଛବୁଦ୍ଧି ବ୍ୟକ୍ତି ଭଗବାନଙ୍କୁ ଭାବେ ନଦୀ, କୁଣ୍ଡ, ଗଛ ଓ ମନ୍ଦିର ପ୍ରଭୃତିରେ ତାଙ୍କ ଉପସ୍ଥିତି ! ବିଦ୍ୱାନ ଦେଖେ ସେ ଦିବ୍ୟଶକ୍ତି ! ବୁଦ୍ଧିହୀନ ଗ୍ରହଣ କରେ ସେ କାଷ୍ଠ, ପାଷାଣ ଓ ପିତ୍ତଳ ନିର୍ମିତ ମୂର୍ତ୍ତି ! ମାତ୍ର ଯୋଗୀ ଜାଣେ, ଅନୁଭବ ଓ ଭୋଗ କରେ ସିଏ ତା' ନିଜ ଅନ୍ତରାତ୍ମା !

କିଏ ଆତ୍ମା ଓ କିଏ ଅନ୍ତରାତ୍ମା ?

ବ୍ରହ୍ମ ମୂର୍ତ୍ତ ଓ ଅମୂର୍ତ୍ତ ! ବ୍ରହ୍ମରୁ ଆକାଶ ! ଆକାଶର ଶୂନ୍ୟବାହୁ ମାଟି ମା'କୁ ଦେଲା ତା' ଆଶ୍ଲେଷ ! ସୃଷ୍ଟିର ସୋରିଷ ପୁଷ୍ପରେ ଦାଉଦାଉ ମହକିଲା ସମୟର କିଆରି ! ଶୃଙ୍ଖଳା ଓ ସୁରକ୍ଷା ପାଇଁ ପୃଥୁକୁ ପ୍ରଦାନ କରାଗଲା ଶପଥର କନକଛତ୍ର ଓ କ୍ଷମତାର ରାଜଦଣ୍ଡ !

ହେ ପ୍ରଜାପୁଂଜ, ମୁଁ ତୁମର ସୁରକ୍ଷା କରିବି ! ତୁମ୍ଭମାନଙ୍କ ରକ୍ଷା ପାଇଁ ପ୍ରାଣ ମଧ୍ୟ ଦେବି ! ଆଉ ତୁମେ ଶାସନଛତ୍ରର ସୁରକ୍ଷା ପାଇଁ ନିଜ ପ୍ରାଣବଳି ଦେବାକୁ ଯେପରି କୁଣ୍ଠିତ ନହୁଅ ! ଏଇଠୁ : ଦ୍ୱିଜ ଓ ଔଷଧମାନଙ୍କ ରାଜା ହେଲେ ଚନ୍ଦ୍ର ! ସୂର୍ଯ୍ୟମାନଙ୍କ ରାଜାହେଲେ ବିଷ୍ଣୁ ! ମରୁତମାନଙ୍କ ଇନ୍ଦ୍ର ହେଲେ ପ୍ରଭୁ ! ପ୍ରଜାପତିଙ୍କ ଅଧିପତି ହେଲେ ଦକ୍ଷ ! ପିତୃଗଣଙ୍କ ଯମ, ସୂତ୍ରମାନଙ୍କ ହର, ଶୈଳମାନଙ୍କ ହିମବାନ, ନଦୀମାନଙ୍କ ସମୁଦ୍ର, ଗନ୍ଧର୍ବମାନଙ୍କ ଚିତ୍ରରଥ, ନାଗମାନଙ୍କ ବାସୁକୀ, ସର୍ପମାନଙ୍କ ତକ୍ଷକ, ପକ୍ଷୀମାନଙ୍କ ଗରୁଡ଼, ଗଜମାନଙ୍କ ଶାର୍ଦ୍ଦୁଳ, ଅଶ୍ୱମାନଙ୍କ ଉଚୈଶ୍ରବା ଏବଂ ରାଜାମାନଙ୍କ ରାଜା ହେଲେ କୁବେର !

ଜଳର ରାଜା ବରୁଣ ! ତାଙ୍କରି କୁମର ହେଲା ଜଳନ୍ଧର !

ଦକ୍ଷ ଦୁଲାଳୀ ଖ୍ୟାତି ! ମହର୍ଷି ଭୃଗୁଙ୍କ ପତ୍ନୀ, ତାଙ୍କ ସନ୍ତାନ ତିନୋଟି ! ପ୍ରଥମ ଦୁଇପୁତ୍ର ଧାତା ଓ ବିଧାତା ଏବଂ କନିଷ୍ଠ କନ୍ୟା ଶ୍ରୀ; ବିଷ୍ଣୁପତ୍ନୀ; ତାଙ୍କରି ସ୍ତୁତି କରି ଇନ୍ଦ୍ରର ଘଟିଛି ସମୃଦ୍ଧି !

'ବ୍ରହ୍ମଣଶ୍ଚ ରୁଦଞ୍ଜାତୋ ରୋଦନାଦ୍ରୁଦ୍ର ନାମକଃ !'

ବ୍ରହ୍ମାଙ୍କ ଠାରୁ ରୋଦନରତ ହେଲା ଏକ ପୁତ୍ରୋତ୍ପନ୍ନ - ରୁଦ୍ର ! ତାଙ୍କୁ ପିତାମହ ଦେଲେ ସପ୍ତ ନାମ; ଭବ, ଶର୍ବ ଈଶାନ, ପଶୁପତି, ଭୀମ, ଉଗ୍ର ଓ ମହାଦେବ ! ସେ ଦକ୍ଷକନ୍ୟା କନିଷ୍ଠା ସତୀଙ୍କ ହେଲେ ପତି ! ଦକ୍ଷ କୋପରେ ସତୀ ଆତ୍ମାହୁତି ଦେଇ ପୁନର୍ଜନ୍ମ ଲାଭ କରି ହେଲେ ହିମବାନ ପୁତ୍ରୀ ! ପିତୃଗଣ ଏବଂ ସ୍ୱଧାଙ୍କ ସଂସର୍ଗରୁ ଜାତ ହୋଇଥିଲେ ଦୁଇ କନ୍ୟା ମେନା ଓ ବୈଧାରାଣୀ ! ମେନା ହେଲେ ହିମାଳୟ ପତ୍ନୀ; ଶିବ ପତ୍ନୀ ପାର୍ବତୀ ଜନନୀ !



Source: Author, Digitized by PPRACHIN, SOA

ଅଧର୍ମ ଭାର୍ଯ୍ୟା ହିଂସା ଓ ସେମାନଙ୍କଠୁ ଅନୃତର ଜନ୍ମ ! ପୁନଶ୍ଚ ସେମାନଙ୍କ ଗୋଟିଏ କନ୍ୟା, ତା' ନାଁ ବିକୃତି ! ଭୟ, ନରକ, ମାୟା ଓ ବେଦନା ଏଇ ଦୁଇ ଯୋଡ଼ା ସନ୍ତାନ ପୁଣି ହେଲେ ସେମାନଙ୍କଠୁ ଉତ୍ପନ୍ନ ! ଭୂତମାନଙ୍କୁ ଅପହରଣ କାରିଣୀ ମାୟା ମୃତ୍ୟୁ ନାମକ କଲା ପୁତ୍ରୋତ୍ପନ୍ନ ! ବେଦନା ଓ ରୈବଙ୍କଠୁ ଜାତ ହେଲା ଏକ ପୁତ୍ର - ଦୁଃଖ !

ମୃତ୍ୟୁଠୁ ବ୍ୟାଧି, ଜରା, ଶୋକ-ତୃଷ୍ଣା ଓ କ୍ରୋଧ ହେଲେ ଉତ୍ପନ୍ନ ! ଏମାନେ ଜଳନ୍ଧରର ରାଜସଭା ପାରିଷଦ ଭାବେ କରିଥିଲେ ମଣ୍ଡନ !

ଜଳନ୍ଧର ସଭ୍ୟତା ଉନ୍ମେଷ କାଳର ଏକ ଅତି ଶକ୍ତିଶାଳୀ ପୌରୁଷ ! ପୃଥ୍ୱୀକୁ ସ୍ୱର୍ଗ ଉତାରି ଆଣିଥିଲା ତା' ସାମର୍ଥ୍ୟ ! ଭାଗ୍ୟ ତିଆରି କରିଥିଲା କର୍ମଠ ତା' ଦୁଇହାତ ! ସିଏ ଆସିନଥିଲା କର୍ଣ୍ଣପରି କନକ ଶେଯରେ ଶୋଇ ଏକ ସ୍ଖଳିତ ପାପ ! ଜନ୍ମପରେ ସ୍ଖଳିତ ପାପକୁ ସମୁଦ୍ରକୁ ଫିଙ୍ଗିଦେଇ ଥିଲେ ତା' ଜନନୀ ଜନକ ! ଜୀବନ୍ତ ଶିଶୁକୁ ସଲିଳ ସମାଧି ଦେଇ ନଥିଲା ସିଂଧୁବୃନ୍ଦ !

'......ନ ସ୍ୱୈରୀ ସ୍ୱୈରୀଣୀ କୁତ; ବୃହଦାରଣ୍ୟକରେ ଥିଲା ଅଶ୍ୱପତିଙ୍କ ପ୍ରଶ୍ନ !'

ଲମ୍ପଟ ନାହାନ୍ତି ଏଠି ବାଟପି ଆସିବେ କେଉଁଠୁ ? ଧୂମ ସିନା ଦୂଷିତ କରେ ଶିଖାକୁ !

ସାମାଜିକ ପତନ : ସ୍ଖଳନର ସଫେଦ୍ ସକାଳ !

ଦିନେ କିଏ ଫୁଲଟିଏ ଫିଙ୍ଗି ଦେଇ ଗଲା ସମୁଦ୍ର ସିକତା ଶଯ୍ୟାରେ ! ଓଜାଡ଼ି ଦେଇଗଲା ତା' ପ୍ରଣୟ ପାପର ପ୍ରମାଣ ଅଳିଆପରି ସଦ୍ୟଫୁଟା ଫୁଲ- ଗୋଟିଏ ପୁଅ ! ସମୁଦ୍ର ପବନର ଶୀତଳ ଟାୱେଲ ସଦ୍ୟ ପ୍ରସୂତ ସନ୍ତାନକୁ ପୋଛି ନେଲା ବେଳେ ସେ ଖୁବ୍ ପାଟି ଗଲା, କିଏ ମୁଁ ? ମୁଁ କିଏ ? କିଏ ମୁଁ ? କୋଽହମ୍!

ପ୍ରକୃତରେ କିଏ ସିଏ ? ସେ କ'ଣ ଚିହ୍ନିଥିଲା ତା' ଅହଂକାରକୁ ?

ଗୁଞ୍ଜରଣ ବ୍ୟାପି ଯାଉଥିଲା ଜନଠୁ ସାରା ଜନପଦ !

ଜନ୍ମ କରି ସଜ ପୁଅଟିଏ କିଏ ଫିଙ୍ଗି ଦେଇ ଯାଇଛି ! ହାୟ, ହତଭାଗିନୀ କିଏ ସିଏ !!

ଯେଉଁ ପୁତ୍ର ପାଇଁ ବନ୍ଧ୍ୟାର କୋଟି ତପ, ପୂଜା ଓ ବ୍ରତ ସେ କ'ଣ ଏତେ ସୁଲଭ ଯେମିତି ଚିନି, ଅଟା ! ତାକୁ ଫିଙ୍ଗି ଦେଇଗଲା ନିଜ ବୁନିଆଦିକୁ ତା' ଭଲ ପାଇବାରୁ ବଡ଼ ବୋଲି ଦେଖାଇ ହେବାକୁ ! ଅନ୍ଧାରରେ କରିଥିବା ପାପ କ'ଣ ପାପ ନୁହେଁ ?



Source: Author, Digitized by PPRACHIN, SOA

ଆଲୋକରେ କରିଥିବା ପାପ ଖାଲି ପାପ ! କେତେ ସଂକୀର୍ଣ୍ଣ ମଣିଷ ବୁଝାମଣାର ଦିଗନ୍ତ ! ସାମାଜିକ ସ୍ୱୀକୃତି ପ୍ରାପ୍ତ ପୁରୁଷ ସ୍ୱର୍ଣରେ ବିବାହର ପ୍ରମାଣପତ୍ର ସାଇତି ଥିବା ନାରୀର ଜନ୍ମିତ ପୁତ୍ର ପାର କରାଇବ ନରକ ! ଅଥଚ ବିବାହ ପ୍ରମାଣପତ୍ର ହୀନ ସ୍ତ୍ରୀ ପୁରୁଷଙ୍କ ତନୟ ହେବ ବିଷ ! ସାମାଜିକ ଦାରୁଣ କଣ୍ଟକ ! ବାଲୁଙ୍ଗା ! ତା' ପାଇଁ ସମାଜରେ ଖାଲି ଚୌକୀ ନାହିଁ !

ଆକାଶ ସୁନୀଳ ! ଶ୍ୟାମଳ ଶସ୍ୟ କ୍ଷେତ, ସମୁଦ୍ର କେତେ ମଞ୍ଜୁଳ ! ତାକୁ ଗଢ଼ିଛନ୍ତି ଈଶ୍ୱର ! ତୁ ତ ତାଙ୍କଠୁ ସୃଷ୍ଟି, ଅମୃତର ସନ୍ତାନ ! ପୁଅ ମୋର କାନ୍ଦନାରେ, କାନ୍ଦନା ! ନେ, ନେ; ତୋ ପାଇଁ ମୁଁ ଆଣିଛି ରୁଣୁଝୁଣୁ ଏଇ ସକାଳ !

ଜନ୍ମିତ କାଳରେ ଜଳଧି ଜଳ ତୋଳୁଥିଲା ଲୁଲାବିର ତାଳ ! ଜଳ ତାକୁ ଧରିଥିଲା ତା' ଶୀତଳ କରରେ ତେଣୁ  ତାକୁ ସହାନୁଭୂତିଶୀଳ ଜନେ ଡାକିଲେ ଜଳନ୍ଧର ! ଜଳଧି କୁମର ! ଜନ୍ମଦାତା, ପାଳନକର୍ତ୍ତା, ଭୟହର୍ତ୍ତା, ବିଦ୍ୟାଦାତା, ଓ ଅନ୍ନଦାତା ! ଏଇ ପଞ୍ଚ, ମାନବର ପିତା ! ଏମାନଙ୍କୁ ସବୁବେଳେ ପ୍ରଣାମ !

'ଲାଳୟେତ୍ ପଞ୍ଚବର୍ଷାଣି.... !' ତା' ପରେ- ଷଷ୍ଠ ସମ୍ୱତ୍ସରଠୁ ତାଡ଼ୟତେ ? ନିଜ ଆତ୍ମଜକୁ ! କଞ୍ଚାମାଟି ତିଆରି କଲା ମୂର୍ତ୍ତି ! ଜୀବନ ଦେବତା ପାଇଁ ଆବଶ୍ୟକ ଉପାଦାନସକଳ! ଗୁରୁ କୁଳାଶ୍ରମର କଠୋର, ଅଲଂଘ୍ୟ ଓ ଅପରିହାର୍ଯ୍ୟ ଅଭ୍ୟାସ !

ଆଗାମୀର ସମସ୍ତ ବୋଝ ମଣିଷ ବୋହିବ ତ ?

ଗୁରୁକୁଳସ୍ଥ ଚରଣ (ସ୍କୁଲ)ରେ ଥରେ ପ୍ରବେଶ କଲେ ଶିଷ୍ୟ ଅଧୟନ କରିବାକୁ ବାଧ୍ୟ ବାରବର୍ଷ ! ଏଇ ବାରବର୍ଷର ବ୍ରହ୍ମଚର୍ଯ୍ୟ (ପରିଶ୍ରମ) ଅତ୍ୟନ୍ତ କଷ୍ଟପ୍ରଦ ! ଗୁରୁକୁଳାଶ୍ରମ ପ୍ରବେଶ ସମୟରେ ଗୁରୁ ଶୁକ୍ରାଚାର୍ଯ୍ୟ ଥିଲେ  ତା' ପାଖରେ ପ୍ରତିଶ୍ରୁତିବଦ୍ଧ ! 'ପୁତ୍ର, ମୁଁ ତୋର ପ୍ରତ୍ୟେକ ଦୁର୍ଗୁଣ ଓ ଦୁର୍ବ୍ୟସନର ସଂଶୋଧନ କରିବି ! ତୋତେ ପଶୁତ୍ୱ ଭିତରୁ ଓଟାରି ଆଣି ମାନବର ଉଚ୍ଚାସନରେ କରାଇବି ଆସୀନ ! ଏଣୁ : ବାଚଂତେ ଶୁନ୍ଧାମି ! ପ୍ରାଣଂ ତେ ଶୁନ୍ଧାମି ! ଶ୍ରୋତଂ ତେ ଶୁନ୍ଧାମି ! ନାଭିଂ ତେ ଶୁନ୍ଧାମିଂ ! ମେଢ଼ଂ ତେ ଶୁନ୍ଧାମି ! ପାୟୁଂ ତେ ଶୁନ୍ଧାମି ! ଚରିତ୍ରାଂସ୍ତେ ଶୁନ୍ଧାମି !

'ମୁଁ ତୋ ପ୍ରାଣ ଶୁଦ୍ଧ କରୁଛି, ତୁ ପ୍ରାଣାୟାମ ଦ୍ୱାରା ଦୀର୍ଘଜୀବୀ ହୁଅ ! ତୋ ନୟନ ଯୁଗ୍ମ କରୁଛି ଶୁଦ୍ଧ, ପବିତ୍ର ଦୃଷ୍ଟିରେ ସଂସାରକୁ ଦେଖ ! ତୋ କର୍ଣ୍ଣ ଯୁଗଳକୁ ମୁଁ ଶୁଦ୍ଧ କରିଦେଉଛି, ତୁ ଭଦ୍ର ମଧୁର ବଚନ ଶୁଣ ! ତୋ ନାଭି, ମେଢ଼ ଓ ପାୟୁ (ଉପସ୍ତି) କୁ କରୁଛି ଶୁଦ୍ଧ ! ତୁ ସଂଯମୀ ହୁଅ ! ତୋ ଚରିତ୍ର, ଆଚାର ଓ ବ୍ୟବହାରକୁ ମଧ୍ୟ ଶୁଦ୍ଧ କରୁଛି ପୁତ୍ର ! ତୁ



Source: Author, Digitized by PPRACHIN, SOA

ପୂର୍ଣ୍ଣ ପବିତ୍ର, ଆଦର୍ଶ ଓ ସଦାଚାରୀ ହୋଇ ଏହି ଗୁରୁକୁଳରୁ ସଂସାରକୁ ଫେର ! ତୋତେ ପାଇ ଜନନୀ ବସୁଧା ହେଉ ଧନ୍ୟା !'

ଭଲ ମଣିଷ କାହାରିକୁ ନିଏ ନାହିଁ ଭୁଲ୍ ଆଡ଼କୁ ! ଭୁଲ୍‌ର ଛକକୁ ଚାଲି ଯାଇଥିବା ମଣିଷ ପଛକୁ ନ ଫେରିଲେ ବି ପଛରେ ଆସୁଥିବା ମଣିଷକୁ ସୂଚାଇଦିଏ, 'ଆଗାଅନି, ଆଗାଅନି ଏ ବାଟ ଭୁଲ୍ ଛକକୁ ! ଅନ୍ଧ କୂପକୁ !'

ଜଳନ୍ଧର ଶିକ୍ଷାଲାଭ କଲା କର୍ମବାଦର ସ୍ତବ ! ତା' ଜ୍ଞାନ ଓ କର୍ମର ଉତ୍ତରୀୟ ଦୁଃଖୀ ମଣିଷର ତପ୍ତଲୋତକ ପୋଛି ନେବ ! ନିଜେ ସିଏ ଜଳି ଯାଉଛି; ଯାଉ ! ସମଗ୍ର ସଂସାର ନ ଜଳି ଥାଉ ! ବ୍ୟକ୍ତିଗତ ହତାଶା, ବ୍ୟର୍ଥତା ଓ ବିଷାଦର ଜଳନ୍ତା ନଡ଼ା କେଇ କେରା ସେ ଫିଙ୍ଗି ଦିଏ ଭିଡ଼ି ବାହାରକୁ; ସମ୍ପୂର୍ଣ୍ଣ ଗୃହଟି ନ ହେଉ ଦଗ୍ଧ ! କି ବିବେକବୋଧ !

ଭଲ ମଣିଷଙ୍କ ହାତରେ ଦିଆ ଯାଉଥିଲା ଶିକ୍ଷାର ଛୁରୀ ! ଯେପରି ଜଣେ ଡାକ୍ତର ହାତଛୁରୀ ଜୀବନ୍ତ ଓ ଆୟୁଷ୍ମାନ୍ କରେ ରୋଗୀକୁ ! ଦସ୍ୟୁ ହାତର ଛୁରୀ ସୁସ୍ଥ ଓ ଶକ୍ତ ମଣିଷକୁ କରେ ମୃତ ! ଗୃହିଣୀ ହାତରେ ଯଦି ପଡ଼େ ସେହି ଛୁରୀ ସେ ପରିବା କାଟେ ! ଶିକ୍ଷାର ଛୁରୀ ପ୍ରାପ୍ତ ହେବା ପୂର୍ବରୁ ଶିଷ୍ୟକୁ ଅତ୍ୟନ୍ତ କଠୋର ଓ ପୀଡ଼ାଦାୟକ କର୍ମରେ ଗୁରୁ କରୁଥିଲେ ନିଯୁକ୍ତ ! ସହିଷ୍ଣୁତା, ଧୈର୍ଯ୍ୟ ଓ ସାହସର ଅନୁପମ ଅଭ୍ୟାସ ତା' ଭିତରେ ସୃଜୁଥିଲା ବଞ୍ଚିବାର ନିର୍ଯ୍ୟାସ ! ଜଳନ୍ଧର ସ୍ୱସଞ୍ଚିତ ଅଧ୍ୟୟନ ଅଧ୍ୟବସାୟର ଚମତ୍କାର ଫଳ ଭୋଗ କରୁଥିଲା ପ୍ରତ୍ୟକ୍ଷ !

ଅଣିମା ଦ୍ୱାରା ସୂକ୍ଷ୍ମକାୟା, ମହିମା ଦ୍ୱାରା ବୃହଦାକାର ଶରୀର, ଗରିମା ଦ୍ୱାରା ଓଜନ ବୃଦ୍ଧି, ଲଘିମା ଦ୍ୱାରା ସେ ହୋଇ ପାରୁଛି ହାଲୁକା ! ପ୍ରାପ୍ତ ସିଦ୍ଧି ଦ୍ୱାରା ଦୂରସ୍ଥ ବସ୍ତୁକୁ କରି ପାରୁଛି ସ୍ପର୍ଶ ଏବଂ କରି ପାରୁଛି ଲାଭ ! ସମସ୍ତ ଆକାଂକ୍ଷା ପ୍ରାକାମ୍ୟା ଦ୍ୱାରା ଇଚ୍ଛାନୁଯାୟୀ କରୁଛି ପୂରଣ ! ଇଶିତା; ଶରୀର ଓ ମନର ଆନ୍ତରିକ ସଂସ୍ଥାନ ଓ ଚକ୍ରମାନଙ୍କ ଉପରେ ପ୍ରଭୁତ୍ୱ ତଥା ସଂସାରର ସମସ୍ତ ପଦାର୍ଥର ସ୍ୱେଚ୍ଛା ପୂର୍ବକ ପ୍ରୟୋଗ ସାମର୍ଥ୍ୟ ତାର ରହିଛି ! ବଶିତା ସାଧନ ଦ୍ୱାରା ସେ ସମସ୍ତ ପରିସ୍ଥିତିରେ ସମସ୍ତ ବସ୍ତୁକୁ କରିପାରୁଛି ନିଜବଶ ! ପୁନଶ୍ଚ ଲଘିମା ଦ୍ୱାରା ସେ ନିରୋଗ, ଭୋଗ ନିବୃତ୍ତ, ବର୍ଣ୍ଣ ଉଜ୍ଜ୍ୱଳ, ସ୍ୱର ସୌଷ୍ଠବଯୁକ୍ତ, ସୁବାସିତ କାୟା, ମଳମୂତ୍ର ହ୍ରାସ ପ୍ରଭୃତି ବହୁ ସିଦ୍ଧି ସମୃଦ୍ଧ ! ତମଃ ଓ ରାଜସିକ ଗୁଣ ସମ୍ପନ୍ନ ଯୁବକ ଜଳନ୍ଧର ଲାଭ କରିଥିଲା ସିଦ୍ଧି ଅନେକ ଓ ବୃଦ୍ଧି ହୋଇଥିଲା ତା' ବୁଦ୍ଧି ! 'ଶୁକ୍ର ରହସ୍ୟ'ର "ଦ୍ୱମିତି ନନ୍ଦିତି କାର୍ଯ୍ୟେ କାରଣେ ସତ୍ୟୁପାଘୋ ଦ୍ୱିତୀୟ ମିତରଥେକଂ



Source: Author, Digitized by PPRACHIN, SOA

ସଚ୍ଚିଦାନନ୍ଦ ରୂପମ୍ !" ଅର୍ଥାତ୍ କାର୍ଯ୍ୟ ଓ କାରଣରୂପୀ ଉପାଧି ଦ୍ୱାରା ହିଁ ତ୍ୱମ୍ ଓ ତତ୍‌ର ପ୍ରଭେଦ ଘଟେ ! ଉପାଧି ଘୁଞ୍ଚି ଗଲାପରେ ଦୁହେଁ ଏକ ! ରହିଯାଏ ଖାଲି ସଚ୍ଚିଦାନନ୍ଦ ରୂପ !

ସେ କିଛି ବୁଝିଲା ପରି ଗମ୍ଭୀର ହୋଇ ବସେ ! ତ୍ୱମ୍ ଓ ତତ୍ ଭିତରୁ ନିଜକୁ ପାଏନା ! ନିଜକୁ ଯେତେବେଳେ ସେ ପାଏ ସେ ତୁମେ ବା ତାହା ନୁହେଁ, ନୁହେଁ ସଚ୍ଚିଦାନନ୍ଦ ରୂପ, ସେ ଖାଲି 'ଅହମ୍' ! ଆଉ ଜଣେ ବିଧାତା; ନବ ପ୍ରଜାପତି ! ବିଧାତା ଯାହା ସୃଷ୍ଟି କରିନି ସେ ତା'ର ସ୍ରଷ୍ଟା ! ସେ ତା'ର ପାଳନ ଓ ସଂହାର କର୍ତ୍ତା ! ନବୀନ ବିଧାତା !

ଚାକ୍ଷୁଷ ମନୁ : ଉର, ପୂରୁ, ଶତଦ୍ୟୁମ୍ନ ପ୍ରଭୃତି ତାଙ୍କ ଦଶପୁତ୍ର ! ଉରଙ୍କ ପୁତ୍ର ଷଡ଼ାଗ୍ନେୟୀ ! ଷଡ଼ାଗ୍ନେୟୀଙ୍କ ବୀର୍ଯ୍ୟବନ୍ତ ପୁତ୍ରପୁଞ୍ଜଙ୍କ ମଧ୍ୟରେ ଜ୍ୟେଷ୍ଠ ଅଙ୍ଗ ! ଅଙ୍ଗ ଓ ସୁନୀଥାଙ୍କ ଔରସରୁ ଜନ୍ମ ଏକମାତ୍ର ବେଣ ! ପୃଥିବୀର ପ୍ରଥମ ମହିପତି ଉଲଘଂନ କଲେ ବେଦର ଷଡ଼୍‌ମର୍ଯ୍ୟାଦା ! ନିଜର ଅର୍ଥନୈତିକ ନୂତନ କାର୍ଯ୍ୟକ୍ରମ କବଳିତ କଲା ପ୍ରଶାସନିକ ବିଫଳତା !

ସେ ପ୍ରତିଷ୍ଠିତ କରାଇଲେ ସମଗ୍ର ଦେଶରେ କଳାକୁଞ୍ଜ ! କଳାବିଦ୍ ଯୁବତୀସବୁ ପୁରୁଷଙ୍କୁ କଲେ ତୃପ୍ତ ଓ ଅର୍ଥାଗମର ପାଇଲେ ସୁଲଭ ପଥ ! ଅର୍ଥର ସଞ୍ଚାଳନ ପାଇଁ ଦ୍ୟୁତବିଦ୍ ରୂପସୀଗଣ ଧନିକ ଶ୍ରେଷ୍ଠୀଙ୍କୁ ଆକର୍ଷଣ କରି କଲେ ସେମାନଙ୍କ ଅର୍ଥ ହରଣ ! ବେଣ ନିଶ୍ଚେୟ କରିଥିଲେ- ଅର୍ଥ ସମସ୍ତ ପ୍ରମୁକ୍ତିର ପଥ ! କଳାକୁଞ୍ଜରେ ଚଢ଼ା ଶୁଳ୍କ ଆୟ ଲାଗି ଉନ୍ମୋଚିତ କରିଥିଲେ ପାନଶାଳା ! ପରିବେଷିତ ହେଉଥିଲା ଆସବ !

ତାଙ୍କ ଶାସନର ଚତୁର୍ଥ ଯୁଗ !

ଆମର ଦାବୀ ପୂରଣ ହେଉ, ଆମର ଦାବୀ ପୂରଣ ହେଉ...., ଶ୍ରମିକ ଆନ୍ଦୋଳନ, ଛାତ୍ର ଆନ୍ଦୋଳନ, ପୁଲିସ ଆନ୍ଦୋଳନ, ଶିକ୍ଷକ ଧର୍ମଘଟ, ଆଇନଜ୍ଞଙ୍କ ଅନଶନ, ଚକବନ୍ଦ, ଅଖବନ୍ଦ, ଖାଲି ବନ୍ଦ ନଥିଲା ବନ୍ଦ ! ବେଣ ବୁଝି ପାରିଲେନି ବୃହତ୍ତର ବେକାର ଯୁବଗୋଷ୍ଠୀଙ୍କୁ ନିଯୁକ୍ତି ଦେବେ କେଉଁଠି ! ଭୁଲ୍ ପାଠ ପଢ଼ାଉଥିବା ପାଠଶାଳା ଓ ପାଠ୍ୟକ୍ରମକୁ ବନ୍ଦ କରିବେ କେମିତି ! ଯୁବଦଳର ନେତୃତ୍ୱ ନେଇ ସାମ୍ନାରେ କବାଟପରି ଠିଆ ହେଲେ ଋଷି କୃଶ ! ମୁନିଗଣ ଦେଲେ ତାଙ୍କୁ ନିର୍ଦ୍ଦେଶ : 'ଅଧଶଂସ ଶୋଶୁଚତୋ ଦହନ୍ତୁ' ! ହେ ବୀର ପୁରୁଷ, ଯିଏ ପାପ ହେତୁ ଅନ୍ୟମାନଙ୍କ ପ୍ରତି ଆଚରଣ କରିଛି ହିଂସା, ତାକୁ ହନନ କର, ଶୀଘ୍ର ହନନ କର !



Source: Author, Digitized by PPRACHIN, SOA

ହତ ବେଶରେ ଦକ୍ଷିଣ ହସ୍ତକୁ ମନ୍ଥନ କରି ଜାତକଲେ ପୃଥୁଙ୍କୁ ! ଧନୁ ଓ କବଚ ଧାରଣ କରି ରାଜଦଣ୍ଡକୁ କଲେ ଗ୍ରହଣ ! ରାଜସୂୟ ଯଜ୍ଞ ଦ୍ୱାରା ସେ ହେଲେ ଅଭିଷିକ୍ତ ! ପୃଥୁଙ୍କୁ ପୃଥ୍ୱୀ କଲେ କଲ୍ୟାଣ ! ପୃଥିବୀକୁ ଦୋହନ କରି ସେ କଲେ ଶସ୍ୟୋତ୍ପନ୍ନ ! ଦୁଗ୍ଧ ଧାରାପରି ଶସ୍ୟଧାରା କ୍ଷୁଧିତ ମଣିଷକୁ ଦେଲା ବଞ୍ଚିବାକୁ ଶକ୍ତି ଓ ତୃପ୍ତି !

ପୃଥିବୀର ଜୀବନଯାତ୍ରା ନେଲା ନୂଆମୋଡ଼ ଓ ଗଢ଼ି ଠିଆ ହେଲା ନବବସତିର ନୂତନ ସଂସ୍କୃତି ! ନାଗରିକ କଲେ ନିବେଦନ :

'କାରୁରହଂ ତପ୍ତୋ ଭିଷଗୁପଳ ପ୍ରକ୍ଷିଣା ନନା ! ନାନାଧିୟୋ ବସୂୟବୋ ନୁଗା ଇବ ତସ୍ଥି ମେନ୍ଦ୍ରାୟେନ୍ଦ୍ରୋ ପରିସ୍ରବ !!'

ଅର୍ଥାତ୍ ମୁଁ କାରୁ, ସ୍ତୁତି କର୍ତ୍ତା ଜଣେ ଶିଳ୍ପୀ, ମୋ ପୁତ୍ର ଭିଷକ୍, ମାତା ଓ ଭଗ୍ନୀ ସ୍ୱପରିଶ୍ରମରେ ଚକି ଘୂର୍ଣ୍ଣନ କରି ଶସ୍ୟରୁ ପ୍ରସ୍ତୁତ କରନ୍ତି ଅନ୍ନ ! ଆମେ ଧନ ଇଚ୍ଛୁକ ବଣିକ, ବିବିଧ କର୍ମଯୁକ୍ତ ! ତୁମରି ଆଜ୍ଞାନୁଯାୟୀ କରୁଅଛୁ ନାନା କର୍ମ ! ହେ ତେଜସ୍ୱିନ୍, ଐଶ୍ୱର୍ଯ୍ୟ ପାଇଁ ବର୍ଷା କର ସୁଖ ! ଆମେ ହେଉ ସୁଖୀ ! ଦୀର୍ଘାୟୁ ଓ ଐଶ୍ୱର୍ଯ୍ୟପ୍ରାପ୍ତ !

ମହି ହେଲା ସନ୍ତୁଷ୍ଟ !

କିନ୍ତୁ ସ୍ୱର୍ଗ.... !!

ଛୋଟ ଏକ ଘଟଣାର ଲୋଷ୍ଟ୍ର ଗୁଣ୍ଡଗୁଣ୍ଡ କରି ଦେଲା ତା'ର ଶ୍ରୀର କାଚ !

ମଦମତ୍ତା ବିଦ୍ୟାଧାରୀ ବିଶାଳାକ୍ଷୀ ଆରକ୍ତ ପଦ ଓ ପାପୁଲି ଇନ୍ଦ୍ରନୀଳ ନଭ୍ରରେ ରକ୍ତ ପଦ୍ମପରି ହେଉଥିଲା ଲୀଳାୟିତ ! ଭ୍ରମର ଗୁଞ୍ଜନପରି କେତେବେଳେ ଅନୁଷ୍ଟୁପ ତ କେତେବେଳେ ଗାୟତ୍ରୀର ମଧୁର ଛନ୍ଦ ଗୁଣୁଗୁଣୁ ହୋଇ ନିଗାଡୁଥିଲା ତା' କଣ୍ଠ ! କରରେ ତା' ନୃତ୍ୟରତା ଦିଗବିଦିଗ ଆମୋଦିତ ସନ୍ତାନକ ପୁଷ୍ପର ଗୋଟିଏ ମାଳା ବିତରୁ ଥିଲା ଛଅଟି ଋତୁର ବାସ୍ନା ! ତାରି ମହକର କୋମଳ ଲଳିତ ସ୍ପର୍ଶରେ ଆକୃଷ୍ଟ ଧ୍ୟାନସ୍ଥ ଋଷି ଦୁର୍ବାସା କଲେ ଉନ୍ମୁକ୍ତ ଚକ୍ଷୁର ଝରକା ! ସିଏ ଅନସୂୟା ପୁତ୍ର !

ଅନସୂୟା ସ୍ୱାମୀ ସେବାର ପ୍ରଜ୍ୱଳିତ ଶିଖା ପରମ ସତୀ ! ତାଙ୍କ ତ୍ୟାଗ ଓ ତପସ୍ୟାର ଅତ୍ୟୁଜ୍ଜ୍ୱଳ ଶିଖା ଘନବନାନୀ ଟପି ଆକାଶ ମଣ୍ଡଳକୁ କରିଥିଲା ଉଜ୍ଜ୍ୱଳ ! ସୂର୍ଯ୍ୟ ସେ ଶିଖା ସାମ୍ନାରେ ଦେଖାଗଲେ ମ୍ଳାନ ! ଦେବଲୋକ ହେଲେ ବିସ୍ମିତ !

ସେଦିନ : ସ୍ୱାମୀ ଅତ୍ରିଙ୍କୁ ସହାୟତା କରୁଥା'ନ୍ତି ସେ ସମୀଧ ! ଦ୍ୱାରରେ ତ୍ରିମୂର୍ତ୍ତି ଅତିଥି ଉଚ୍ଚ କଣ୍ଠରେ ଆବୃତ୍ତି କଲେ ପୁରୁଷସୂକ୍ତ ! ଅତିଥି ଦେବତାଙ୍କ ପଦକ୍ଷାଳନ କରି କଲେ



Source: Author, Digitized by PPRACHIN, SOA

ଅନସୂୟା ସ୍ୱାଗତ ! ଯଥା ସତ୍କାର ପରେ ଜିଜ୍ଞାସା କଲେ କେଉଁଠୁ ସେମାନେ କରିଛନ୍ତି ଆଗମନ ଏବଂ କି ଦେଇ ତୃପ୍ତ କରିବେ ସେମାନଙ୍କ ବାଞ୍ଛା !

'ଅତିଥିଙ୍କୁ ଆତିଥ୍ୟ ଦେବା ଗୃହସ୍ଥର ଧର୍ମ ! କେଉଁ ଆତିଥ୍ୟରେ ପୂର୍ଣ୍ଣ ହେବ ଆପଣଙ୍କ ମନସ୍କାମ, ପ୍ରଭୁ !'

ଛଅଟି ଆଖିର ଦୃଷ୍ଟି ଦେବୀଙ୍କ ପୃଥୁଳ କୁଚ ଦୁଇଟି ଉପରେ ଜମି ଯାଇଛି ! ଯେମିତି ଖଣ୍ଡ ଖଣ୍ଡ ମେଘ ଯୁଗ୍ମାଦ୍ରିରେ ପିଟି ହୋଇ ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ଯାଉଛନ୍ତି !

ନାରୀର ଶ୍ରେଷ୍ଠ ସୌନ୍ଦର୍ଯ୍ୟ ହେଉଛି ମହିମାନ୍ୱିତ ! ନାରୀତ୍ୱର ମହିମା ସେଇ ସ୍ତନ ଦୁଇଟି ଉପରେ ଅତିଥିଙ୍କ ଲୋଲୁପ ଦୃଷ୍ଟିର ହାତ !

ଏକମାତ୍ର ପତି ଓ ସନ୍ତାନଙ୍କ ପାଇଁ ସାଇତା ସମ୍ପତ୍ତିର କବଳାଟି ଉପରେ ଅନ୍ୟ ପୁରୁଷ ବସାଇବ ନିଜ ନାଁଟି ? ଅସମ୍ଭବ ! ମାତ୍ର ଅତିଥି ଓ ଦେବତା ! ଏମାନେ ଅସନ୍ତୁଷ୍ଟ ହେଲେ ସ୍ୱାମୀଙ୍କର ହ୍ରାସ ହେବ ଆୟୁ ! ଅଶୁଭ ଛୁଇଁବ ସେମାନଙ୍କ ସୁଖୀ ଜୀବନ ପାଦପର ଶାଖା !

'ହେ ମାୟାବୀ, ତୁମେ କାମନା କଲ ମୋ ପତି ଓ ସନ୍ତାନଙ୍କ ସମ୍ପତ୍ତି ! ମୁଁ ସତୀ ସ୍ତ୍ରୀ ଓ ମୋ ପତି ଋଷି ଅତ୍ରି, ମାତ୍ର ସନ୍ତାନ ନାହାନ୍ତି ! ହେ ଦେବତା ଅତିଥି, ତୁମେ ତ୍ରୟ ହୋଇଯାଅ ଉଲଗ୍ନ ବାଳୁତ ଶିଶୁ ମୋ ସ୍ତନ୍ୟରେ ପୁଷ୍ଟ ହେବ ତୁମ ତନୁ ଓ ବାଞ୍ଛା ବି ହୋଇଯିବ ପୂର୍ଣ୍ଣ !' ହଠାତ୍ ସେମାନେ ହୋଇଗଲେ ସଦ୍ୟଜାତ କ୍ଷୁଦ୍ର କ୍ଷୁଦ୍ର ! ଶିଶୁଙ୍କୁ କୋଳେଇ ନେଲେ ଜନନୀ ! ଧନ୍ୟ ଧନ୍ୟ ତୁମେ ସତୀ ତୁମକୁ ପାଇ ଧନ୍ୟ ଅବନୀ : ସ୍ୱର୍ଗରୁ ପୁଷ୍ପ ହେଲା ବୃଷ୍ଟି ! ଅତ୍ରି ଶିଶୁ ବିଷ୍ଣୁଙ୍କୁ ଦେଲେ ନାମ ଦତ୍ତାତ୍ରେୟ !

ବ୍ରହ୍ମା ହେଲେ ଚନ୍ଦ୍ର ଓ ମହେଶ୍ୱର ବାଳୁତ ଦୁର୍ବାସା ! ସମୟର ଝରଣା ଚୁପ୍‌ଚାପ୍ ଠିଆ ନହୋଇ କଲା ଏମାନଙ୍କ ସେବାର ବ୍ୟବସ୍ଥା ! ହୁଡ଼ିଲାନି ବ୍ୟାକରଣର ନିୟମ !

ସେଇ ସିଦ୍ଧତପା ଶିବାଂଶ ଅବତାର ଧ୍ୟାନସ୍ଥ ଦୁର୍ବାସା କ୍ଷୀଣକଟି ବିଶାଳାକ୍ଷୀ ରୂପସୀ ବିଦ୍ୟାଧରୀଙ୍କୁ ଯାଚନା କଲେ ଅପୂର୍ବ ସେ ମାଳା !

'ମୋତେ ତୁମେ ଦେବକି ? ଛଅଟି ଋତୁ ମହମହ ବାସୁଛି !'

'ସ୍ୱୀକାର କରୁଛି ଆପଣଙ୍କ ଯାଚନୀୟ ଆଗ୍ରହ ନିଜର ପରମ ସୌଭାଗ୍ୟ ଭାବି ! ପ୍ରଣାମ ନିବେଦନ କରୁଛି ପ୍ରଥମେ ମୁଁ ବିଦ୍ୟାଧାରୀ ବିଶାଳାକ୍ଷୀ !'

'ଶିବାସ୍ତେ ସନ୍ତୁ ପନ୍ଥାନଃ !' କଲ୍ୟାଣ କଲେ ମୁନି !



Source: Author, Digitized by PPRACHIN, SOA

ମଦମତ୍ତ ଭ୍ରମର ଗୁଞ୍ଜନଯୁକ୍ତ ସୁବାସିତ ଦିବ୍ୟମାଳା ଧାରିତ ମୁନିଶ୍ରେଷ୍ଠଙ୍କ ସେଦିନ ଇନ୍ଦ୍ର ସହ ପଥରେ ଘଟିଲା ଭେଟାଭେଟ ! ପାରିଜାତ ଖଚିତ ମସ୍ତକ ହେଲା ନତ ! ଐରାବତରୁ ଅବତରିତ ଇନ୍ଦ୍ର ମୁନିଙ୍କ ପ୍ରତି ହେଲେ ଯୁକ୍ତ ହସ୍ତ ! ପ୍ରୀତ ମୁନି ସାଗ୍ରହରେ ମାଳାଟି ଦେଇ ଇନ୍ଦ୍ରଙ୍କୁ କଲେ ସମ୍ମାନିତ ! କ୍ଷମତା ମଦ ମତ୍ତ ଇନ୍ଦ୍ର ମୁନିଙ୍କ ହସ୍ତରୁ ଉପହାରଟି ତୋଳି ନେଇ କଲେ ଐରାବତମସ୍ତକ ଭୂଷିତ ! ଯେମିତି ନୀଳ କୈଳାସ ଶିଖର ଆଲିଙ୍ଗିତ କଲା ଗଙ୍ଗାଧାର ରଜତ ! ମଦ୍ କ୍ଷରିତ ହସ୍ତୀ ପୁଷ୍ପ ସୌରଭରେ ହେଲା ଉନ୍ମତ ! ଶୁଣ୍ଢରେ ତୋଳି ଆଣି କିଛି କ୍ଷଣ ହେଲା ଆଘ୍ରାଣରତ ! ତା' ପରେ ଛିନ୍ନମାଳା ବିଛେଇ ହୋଇ ପଡ଼ିଲା ଶ୍ୟାମ ଦୁର୍ବା ଉପରେ ଶିଶିରର ବଡ଼ବଡ଼ ବୁନ୍ଦା !

ମୁନି ଜଳି ଉଠିଲେ କ୍ରୋଧରେ !

'ଐଶ୍ୱର୍ଯ୍ୟ ମଦମତ୍ତ ଦୂଷିତ ହୃଦୟ ଇନ୍ଦ୍ର, ମାଳାପରି ତୁମେ ବି ହୁଅ ଶ୍ରୀନଷ୍ଟ ! ନିର୍ବୀର୍ଯ୍ୟ ! ମାଳାର ପତନପରି ପତନ ହେଉ ତୁମ ସ୍ୱର୍ଗଶ୍ରୀ !'

ହୀରକ, ବୈଦୂର୍ଯ୍ୟ, ପ୍ରବାଳ, ନୀଳା ଓ ମୁକ୍ତା ଖଚିତ କନକ ମୁକୁଟ କଂପିତ ଇନ୍ଦ୍ର ଶିରରୁ ପଡ଼ିଗଲା ତଳେ ! ବିଭୂଷିତ ଆରକ୍ତ ପାରିଜାତମାଳା ଫିଟି ବିଞ୍ଛି ହୋଇଗଲେ ଗୋଟି ଗୋଟି ମୁନିଙ୍କ ଚରଣ କମଳେ ! କାକୁସ୍ଥ ଇନ୍ଦ୍ର କଲେ ମିନତି : ହେ ତପୀଶ୍ରେଷ୍ଠ, କ୍ଷମାର ପୂତ ଜାହ୍ନବୀ ଜଳରେ ଧୃଷ୍ଟତା ଓ ଅଜ୍ଞାନତାକୁ ମାଜଣା ଓ ମାର୍ଜନା କରନ୍ତୁ ! ହେ ସଜଳ ଜଳଦ, କ୍ଷମାର ଶୀତଳ ବୁନ୍ଦାରେ ତପ୍ତ କ୍ଷମାକୁ ସାନ୍ତ୍ୱନା ଦିଅନ୍ତୁ !

ଇନ୍ଦ୍ରର ସମସ୍ତ ପ୍ରକାର ସ୍ତବ ହୋଇଗଲା ଅଚଳ ମୁଦ୍ରା ! କ୍ରୋଧିତ ମୁନି ମାନସରୋବରରେ ସ୍ନାନ କରି କଲେ କୈଳାସ ଯାତ୍ରା !

ଇନ୍ଦ୍ର ହୋଇଗଲେ ରୁଗ୍‌ଣ ! ନରସବୁ ହେଲେ ଅପବିତ୍ର ! ଦେବଦେବୀ ହେଲେ ନିରୁଦ୍ଦିଷ୍ଟ ! ଯଜ୍ଞାନୁଷ୍ଠାନ ହେଲା ବଳିପୀଠ ! ବିପ୍ର ହେଲେ ମନ୍ତ୍ର ବିସ୍ମୃତ ! ସୁନ୍ଦର ଉପରେ ହେଲା କୁତ୍ସିତର ଜୟ ! ମହନୀୟ ଦେବଗୁଣର ଘଟିଲା ବିଲୟ ! ଜ୍ୟୋତି ହେଲା ଛାୟାଚ୍ଛନ୍ନ, ଅଗ୍ନି ମ୍ଳାନ ଓ ସକାଳସବୁ ହୋଇ ଗଲେ ରୁଗ୍‌ଣ ! ସ୍ୱର୍ଗ ତ୍ୟାଗ କରି ଶ୍ରୀ ଚାଲିଗଲେ ସିନ୍ଧୁ ପ୍ରଦେଶ ! ବରୁଣ ଦୁଲଣୀ ହେଲେ ଜଗନ୍ନାତ ! ସାଗର ପୁର ପୂରିଲା ବିବିଧ ଐଶ୍ୱର୍ଯ୍ୟ ଓ ମହମହ ମହୋତ୍ସବରେ !

ବୁଦ୍ଧିମାନ ଅଦିତିଙ୍କ ପୁତ୍ର ହୋଇଗଲେ ଏକ ଏକ ଅପରାହ୍ନ ! ଅପରାହ୍ନପରି ଜ୍ୟୋତିହୀନ ଓ ଶୀର୍ଣ୍ଣ ! ଦିତି ଓ ଦନୁର ତନୟ ସବୁ ଲଭିଲେ ବିଜୟ !

ଏକଦା ଶୁଣାଗଲା ଗୋଟିଏ ହର୍ଷଘୋଷ :



Source: Author, Digitized by PPRACHIN, SOA

'ତସ୍ୟ ହ ବ୍ରହ୍ମଣୋ ବିଜୟେ ଦେବା ଅମହୀୟନ୍ତ ତ ଏକ୍ଷନ୍ତାସ୍ମାକ ମେବାୟଂ ବିଜୟୋଽସ୍ମାକମେବାୟଂ.... !' ଆମ୍ଭମାନଙ୍କର ବିଜୟ ଘଟିଛି ! ଆମେ ଜୟ ଲକ୍ଷ୍ମୀଙ୍କୁ ପାଇଛୁ ! ପାଇଛୁରେ ପାଇଛୁ !

ମୃତ୍ୟୁର ନୀଳମେଘ ଚହଟିଛି ! ରକ୍ତପାଟ ପରିହିତ ଦୈତ୍ୟସବୁ କଟାବୃକ୍ଷ ! ବିଜିତ ଦେବ ବିପୁଳ ଔଦ୍ଧତ୍ୟ, ଅଭିମାନ ଓ ଅହଙ୍କାରରେ ଉନ୍ମାଦ ! ସେମାନଙ୍କ ଶକ୍ତି ଗଛପରି କୁଆଡ଼େ ଦୈତ୍ୟଙ୍କୁ ଟାଳିଛି !

ରାଜ୍ୟର କେନ୍ଦ୍ରସ୍ଥଳରେ ହଠାତ୍ ଦିନେ ଦେଖାଗଲା ଗୋଟିଏ ସୁନାର ପାହାଡ଼ ! ସୌର ରଶ୍ମିପରି ତୀବ୍ର ଉଜ୍ଜ୍ୱଳ କାନ୍ତି ଯକ୍ଷଟିଏର ଆବିର୍ଭାବ ଘଟିଛି ! ଇନ୍ଦ୍ରଙ୍କ ନିର୍ଦ୍ଦେଶରେ ଅଗ୍ନି ଜିଜ୍ଞାସା କଲେ ଯକ୍ଷ ପରିଚୟ !

'ତୁମେ କିଏ ? କ'ଣ ତୁମ ସାମର୍ଥ୍ୟ ? ପ୍ରଥମେ ନିଜ ପରିଚୟ ଦିଅ !'

'ମୁଁ ଅଗ୍ନି, ବ୍ରହ୍ମାଣ୍ଡକୁ ମୋ ତେଜ ମୁହୂର୍ତ୍ତ ମାତ୍ରକେ କରେ ଭସ୍ମ !'

'ବାଃ, ତୁମ ଆସ୍ପର୍ଦ୍ଧା ପ୍ରମାଣିତ କର, ଦହନ କର କ୍ଷୁଦ୍ର କୁଶ !'

ଯକ୍ଷ ସଂଳାପରେ ହସି ଉଠିଲେ ଅଗ୍ନି ପ୍ରଥମେ, ତା' ପରେ ବିଦାୟୀ ସୂର୍ଯ୍ୟପରି ଆରକ୍ତ ଦିଶିଲା ତାଙ୍କ ମୁଖ !

କପାଳରେ ବୁନ୍ଦା ବୁନ୍ଦା ସ୍ୱେଦ ମୁକ୍ତାପରି ଜକେଇ ଆସିଲା ! ପଛେଇ ପଛେଇ ଲଜ୍ଜିତ ଅଗ୍ନି କଲେ ପଳାୟନ ! ବୃଦ୍ଧ ବଟବୃକ୍ଷପରି ଅଟଳ ଯକ୍ଷ ସେମିତି ଠିଆ ହୋଇଛି !

ପ୍ରବଳ ପ୍ରତାପୀ ବାୟୁ ଏଥର ଜିଜ୍ଞାସା କଲେ ଯକ୍ଷଙ୍କୁ : ମହାଭାଗ, ଅପୂର୍ବ ତେଜୋମୟ ହିରଣ୍ୟବର୍ଣ୍ଣ ଆପଣ କିଏ ? ଯକ୍ଷ ପ୍ରତ୍ୟୁତ୍ତରରେ ଜାଣିବାକୁ ଚାହିଁଲା ସେ କିଏ, କ'ଣ ତାଙ୍କ ପରିଚୟ ଓ ସାମର୍ଥ୍ୟ !

'ମୁଁ ପ୍ରବଳ ପ୍ରତାପି ବାୟୁ !'

'ପ୍ରମାଣିତ କର ତୁମ ସାମର୍ଥ୍ୟ !'

ଅଗ୍ନିଙ୍କପରି ବାୟୁ ବି ହେଲେ ଲଜ୍ଜିତ ! ଏଥର ଆସିଲେ ସ୍ୱୟଂ ଇନ୍ଦ୍ର ! ତାଙ୍କ ପଦ୍ପାତରେ ନଥିଲା ରାଜରାଜର ଔଦ୍ଧତ୍ୟ; ଉଦ୍‌ବେଗ, ଭୟ ଓ ଉତ୍କଣ୍ଠାର ଦ୍ୱନ୍ଦ୍ୱରେ ସେ ଦିଶୁଥିଲେ ନିଷ୍ପ୍ରଭ ! ସେ ଦଣ୍ଡାୟମାନ ହେଲେ ଯକ୍ଷାବିର୍ଭାବ ସ୍ଥାନରେ ! ହଠାତ୍ ଯକ୍ଷ ହୋଇଗଲା ଅଦୃଶ୍ୟ !



Source: Author, Digitized by PPRACHIN, SOA

ଶୂନ୍ୟସ୍ଥାନ ମହକୁଛି ! କସ୍ତୁରୀ, ଗୋରଚିନା, ଚନ୍ଦନ, ପଦ୍ମ, ପାରଜାତ ସୁଗନ୍ଧର ମହମହ ପୁଲକ ! ଲିଭିନି କନକକାନ୍ତିର ଜ୍ୟୋତିର୍ମୟ ସଙ୍କେତ ! ହଠାତ୍ ଶୂନ୍ୟରେ ବିଦ୍ୟୁତ୍‌ପରି ନୃତ୍ୟ କଲା ଏକ ଜ୍ୟୋତି ! ବିସ୍ମିତ ଇନ୍ଦ୍ର ଚକ୍ଷୁରେ ଉତ୍କଣ୍ଠାର ଭର୍ତ୍ତି ପ୍ରଶ୍ନବାଚୀ ! ଯକ୍ଷାବିର୍ଭାବ ସ୍ଥଳରେ ଦଣ୍ଡାୟମାନ ହୋଇଛନ୍ତି ବହୁ ଶୋଭାୟମାନା ଉମା ହୈମବତୀ !

- କିମେତଦ୍ ଯକ୍ଷେମିତି !

- ସା ବ୍ରହ୍ମେତି ! ପ୍ରତ୍ୟୁତ୍ତର ଦେଲେ ଉମା !

ଅଗ୍ନି, ବାୟୁ ଓ ଇନ୍ଦ୍ର ବ୍ରହ୍ମସଂସ୍ପର୍ଶ ପ୍ରାପ୍ତ ହେତୁ ହେଲେ ଶ୍ରେଷ୍ଠ ! ଉମାଙ୍କ ଦ୍ୱାରା ଇନ୍ଦ୍ର ତାଙ୍କୁ ଜାଣିବା (ଦିବ୍ୟଜ୍ଞାନ) ଲାଭ କରିବା ହେତୁ ହେଲେ ରାଜା !

ଅରୂପ ଜ୍ୟୋତିର ସମୁଦ୍ର ସକାଳପରି ଦେଲା ତାଙ୍କୁ ନୂଆ ତେଜ ! ସ୍ୱର୍ଗର ଥୁଣ୍ଟା ବୃକ୍ଷକୁ ପଲ୍ଲବିତ କରାଇବାକୁ ଦେବତା କଲେ ତପସ୍ୟା ! ଅପ୍ରମେୟ ହୃଷିକେଶ ଯୋଗବିଜ୍ଞାନ ନେତା ପ୍ରଧାନ ପୁରୁଷେଶ୍ୱର ପଦ୍ମନାଭ ପ୍ରଦର୍ଶିତ କଲେ ସମୁଦ୍ର ମନ୍ଥନ ଦେବଜାତି ଉତ୍‌ଥାନ ଓ ଶ୍ରୀ ଲାଭର ମୁଖ୍ୟ ଅବଲମ୍ବନ ! ନାଽନ୍ୟ ପନ୍ଥାଃ !

ପ୍ରଥମ ହବି କାମଧେନୁ ! ତା' ଦର୍ଶନରେ ଦେବ ଓ ଦୈତ୍ୟ ହୋଇଗଲେ ଆନନ୍ଦିତ !

ବାରୁଣୀ ଦେବୀ- ଦ୍ୱିତୀୟ ! ତା' ପରେ- ପାରିଜାତ ଓ ଅପ୍‌ସରା ବୃନ୍ଦ ! ଚନ୍ଦ୍ର ଓ ଧନ୍ୱନ୍ତରୀ ଦେବ !

କମଳା ଓ ଉଚ୍ଚୈଃଶ୍ରବା ଅଶ୍ୱ ଏବଂ ପଟେ ହସ୍ତୀ ! ସମୁଦ୍ର ମନ୍ଥନ ଚାଲିଛି ! ଦୁଇ ଦଳଙ୍କ ବାଞ୍ଛିତ ତପସ୍ୟାର ତେଜ ଅମୃତ ବାହାରି ଆସିଛି ! ତଥାପି ସମୁଦ୍ର ମନ୍ଥନ ଅହରହ ଚାଲିଛି !

ରଜ୍ଜୁ ବାସୁକୀ ହଠାତ୍ ବମନ କରି ପକାଇଛି ! ନୀଳନୀଳ ବିଷ ସ୍ରୋତ ବ୍ୟାପିଗଲା ଯୋଜନ ଯୋଜନ ଆକାଶ ! ତ୍ରାହି ତ୍ରାହି ଦୁଇ ଦଳଯାକ ଦେଲେ ଡାକ ! ଜଳ ହେଲା ଜୀବ ଶୂନ୍ୟ ! ମାଟି ଆତଙ୍କିତ ଓ ଆଶଙ୍କିତ- ବନ୍ଧ୍ୟା ହୋଇଯିବ ? ଜନନୀ ବସୁଧା ବଂଧ୍ୟା ହୋଇଯିବ !!

'ତୁମେ ବନ୍ଧ୍ୟା ହେବନି ହେ ବଂଧ୍ୟା ପୃଥିବୀ ! ମୁଁ ତୁମକୁ ସୁସ୍ଥ କରି ବଞ୍ଚାଇ ରଖିବି !' ଶଙ୍କିତ ପୃଥିବୀକୁ ସାନ୍ତ୍ୱନା ଦେଲେ ବୈଜ୍ଞାନିକ ଭବ !

ନିର୍ଗତ ବିଷ ସ୍ରୋତ ଧୀରେ ଧୀରେ ଶୋଷି ନେଇ କଲେ ଶ୍ରୀକଂଠରେ ଠୁଳିଭୂତ ! ଧନ୍ୟ ସେ ଉଦାରତ୍ୱ ! ସିଏ ବି ବ୍ରହ୍ମାଙ୍କପରି ପ୍ରକଟିତ କରିଥିଲେ ନୀଳଲୋହିତ ! ନୀଳ



Source: Author, Digitized by PPRACHIN, SOA

ଲୋହିତ ପ୍ରକଟ ହେବା ମାତ୍ରେ ପଚାରିଲେ; ମୁଁ କିଏ ? କୋଽହମ୍ ! ଆସିଲି କୁଆଡ଼େ ? କାହିଁକି ଆସିଲି ଓ ଯିବି କୁଆଡ଼େ ?

'କୁଆଁ, କୁଆଁ, କୁ....ଆଁ !

'ତୁ ରୁଦ୍ର ! ରୋଦନ କରନା ପୁଅ ! କହିଲେ ବ୍ରହ୍ମା ! ତଥାପି ସେ କାନ୍ଦିଲା ଥରଥର କରି ସପ୍ତବାର ! ବ୍ରହ୍ମା ତାକୁ ଦେଲେ ସପ୍ତନାମ ତୁ ଭବ, ତୁ' ଶର୍ବ, ତୁ' ଈଶାନ ! ତୁ ପଶୁପତି, ତୁ ଭୀମ, ତୁ ଉଗ୍ର, ତୁ ମହାଦେବ ! ତୋ ସ୍ଥାନ ସୂର୍ଯ୍ୟ, ଜଳ, ପୃଥିବୀ, ବାୟୁ, ଅଗ୍ନି, ଆକାଶ, ଦୀକ୍ଷିତ ବ୍ରାହ୍ମଣ ଓ ଚନ୍ଦ୍ରମା ରୂପରେ କରୁଛି ନିରୂପିତ !

ପ୍ରଜାପତି ଦକ୍ଷଙ୍କ ନିଦ୍ରା ରହିତ କନ୍ୟା ସତୀ ତାଙ୍କୁ ବରଣ କରିଥିଲେ ପତି ! ସେହି ଦକ୍ଷଙ୍କ ଅନ୍ୟ ଜଣେ କନ୍ୟା ଖ୍ୟାତି ମହର୍ଷି ଭୃଗୁଙ୍କ ପତ୍ନୀ ଜନ୍ମ କରିଥିଲେ ଶ୍ରୀଙ୍କି; ଶ୍ରୀ ହେଲେ ବିଷ୍ଣୁ ପତ୍ନୀ ! .... ପାର୍ବତୀ ଲକ୍ଷ୍ମୀଙ୍କ ମାଉସୀ !

ସର୍ବ ଭୂତସ୍ଥ ଅଚ୍ୟୁତ ଅହଂକାର ରୂପ ? ତେଣୁ ତାଙ୍କୁ ଭୃଗୁ ଦେଲେ ଅଭିଶାପ !!

ଥରୁଟିଏ ପାପ ପାଇଁ ଦଶଥର ପ୍ରାୟଶ୍ଚିତ କର; ଏହା ଭୃଗୁ ବଚନ !

ଦେବ ଲାଭ କଲେ ଅମୃତ ! ଦୈତ୍ୟ, ଦାନବ ଓ ଅସୁର ହେଲେ ଅମୃତ ବଞ୍ଚିତ ! ମୃତ୍ୟୁ ସଂଜୀବନୀ ଲାଭ ପାଇଁ ଶୁକ୍ରଚାର୍ଯ୍ୟ ଯାତ୍ରା କଲେ କୈଳାସ ! ଶ୍ରୀକଣ୍ଠ ପୁଚ୍ଛାକଲେ ତାଙ୍କ ଆଗମନ ଉଦ୍ଦେଶ୍ୟ ! କହିଲେ ଶୁକ୍ର- ହେ ଭଗବାନ୍ ଶ୍ରୀକଣ୍ଠ କୈଳାସପତି, ଗୌରୀପ୍ରିୟ ଗୁରୁଙ୍କ ଗୁରୁ ମୁଁ ଦେବତାଙ୍କ ପରାଜୟ ଓ ଦୈତ୍ୟଙ୍କ ବିଜୟ ଅଭିଳାଷୀ ! ମୋତେ ସେହି ମନ୍ତ୍ରଦାନ କରନ୍ତୁ ଯାହା ବୃହସ୍ପତି ବି ଜାଣନ୍ତିନି ! ମୃତ୍ୟୁ ସଂଜୀବନୀ !!

'ଏକ ସହସ୍ରବର୍ଷ ଶୀର୍ଷାସନରେ ରହି କ'ଣ ଧୂମ ସେବନ କରି ଆଚରଣ କଲେ ତପ ତୁମେ ହେବ ମନ୍ତ୍ର ପ୍ରାପ୍ତ !'

ତାଙ୍କ ପାଦଦ୍ୱୟ ଆକାଶକୁ ଉଠିଲା, ମସ୍ତକ ଭୂମିରେ ଲଗାଇ କ'ଣ ଧୂମ ସେବନ କରି ସେ ମନନ କଲେ ପ୍ରଣବ ! ଏଣେ ଇନ୍ଦ୍ରାଜ୍ଞାରେ ଦେବ ସୈନ୍ୟ ଦୈତ୍ୟଙ୍କୁ କରି ଚାଲିଲେ ବଧ ! ମୃତ୍ୟୁଭୀତ ଦୈତ୍ୟ କିଛି ଶୁକ୍ରାଶ୍ରମରେ କଲେ ଆତ୍ମଗୋପନ ! ମଦ ଗର୍ବିତ ଦେବ ଶାନ୍ତି ତପୋବନ ଘେରାଉ କରି ଆଚରଣ କଲେ ହିଂସା ! ଶୁକ୍ରଜନନୀ ଖ୍ୟାତିଙ୍କ ଗ୍ରହଣ କଲେନି ମନା ! ଶେଷରେ ଦେବୀ ପ୍ରୟୋଗ କଲେ ନିଜ ତପ ଶକ୍ତି ! ଦେବତା ଲାଭ କଲେ ମୂର୍ଚ୍ଛିତ ଗତି !

'ମାଂ ତ୍ୱଂ ପ୍ରବିଶ.... !' ମନ୍ତ୍ର ଉଚ୍ଚାରିତ କଲେ ବିଷ୍ଣୁ ! ଦେବଗଣ ତାଙ୍କ ଭିତରେ ପ୍ରବେଶ କରି ହେଲେ ସୁରକ୍ଷିତ ! ନିଦ୍ରା ଓ ଭୟ ରହିତ ! ପୁଣି ହେଲେ ହିଂସା ଆଚରିତ !



Source: Author, Digitized by PPRACHIN, SOA

'ହେ ଇନ୍ଦ୍ର, ବିଷ୍ଣୁ ସହିତ ତୁମକୁ ଓ ତୁମ ଦେବଗଣଙ୍କୁ ମୁଁ ଭକ୍ଷଣ କରୁଛି ! ଦେଖ ମୋ ତପର ସାମର୍ଥ୍ୟ !' କ୍ରୋଧିତା ଖ୍ୟାତି ଧାରଣ କଲେ ଭୟାନକ ମୂର୍ତ୍ତି ! ଭୟଭୀତ ଶ୍ରୀହରି ତତ୍‌କ୍ଷଣାତ୍ ପ୍ରେରିତ କଲେ ସୁଦର୍ଶନ ଅସ୍ତ୍ର, ଛିନ୍ନ ହେଲା ଖ୍ୟାତିଙ୍କ ମସ୍ତକ ! ଦେବଗଣ ହେଲେ ଆଶ୍ୱସ୍ତ !

ତପାଚରଣରୁ ଲେଉଟି ମହର୍ଷି ଭୃଗୁ ପତ୍ନୀଙ୍କ ମୃତ୍ୟୁ ଓ ଆଶ୍ରମ ରୂପ ଦେଖି ହେଲେ ଦୁଃଖୀ ! ସତ୍ୱଗୁଣୀ ଶ୍ରୀହରି ଗୁଣ ବିପରୀତ ତମଃଗୁଣୀ ? ଭୟଙ୍କର ନାରୀହନ୍ତା ପାପୀ ! ଏହି ପାପାଚରଣ ହେତୁ ହେଉ ତୁମ ଗର୍ଭବାସ ! ବିଧୂର ବେଦନାସମ ଲାଭ କର ଗର୍ଭଯନ୍ତ୍ରଣା; ମୋ ଅଭିଶାପ ଘେନ !

ମୀନ, କଚ୍ଛପ, ବରାହ ଓ ଅର୍ଦ୍ଧପଶୁ ନୃସିଂହ ପ୍ରଭୃତି ହୋଇ ଶେଷରେ ହେବ ତୁମେ ଶାନ୍ତ ସୌମ୍ୟ ମୈତ୍ରୀର ବାର୍ତ୍ତାବହ ହିଂସାବିରୋଧି ବୁଦ୍ଧ ! ହେ ବିଶ୍ୱସମ୍ରାଟ, ତୁମରି ବନ୍ଦନା କରିବ ବିଶ୍ୱ- ଏଇ ମୋ ଅଭିଶାପ !

ଅଭିଶାପ ବର୍ଷଣ ପରେ କିଛିଟା ହେଲେ ଶାନ୍ତ ମହର୍ଷି !

ହେ ଦେବୀ ! ବିଷ୍ଣୁ ଦ୍ୱାରା ହିଂସିତ ତୁମକୁ ମୁଁ ପୁନର୍ଜ୍ଜୀବିତ କରୁଛି ! ଯଦି ମୁଁ ଧର୍ମଜ୍ଞାତା, ସତ୍ୟ ତତ୍ତ୍ୱଦ୍ରଷ୍ଟା, ସେହି ସତ୍ୟଶକ୍ତି ମୋ କରୁ ତୁମକୁ ପୁନର୍ଜ୍ଜୀବିତ !

ଅଲୌକିକ ତପସିଦ୍ଧପୂତଜଳ ଏକମୁଠା ମୃତାଙ୍କ ଅପଘନ ଓ ମସ୍ତକରେ ଦେଲେ ଛିଞ୍ଚି ! କର୍ତ୍ତିତ ମସ୍ତକ ପିଣ୍ଡରେ ହୋଇଗଲା ସଂଯୁକ୍ତ ! ନିଦ୍ରିତା ଯେମିତି ଉଠି ବସିଲେ ସିଏ ନିଦ୍ରା ତେଜି !

ଭୀତ ଓ ଆତଙ୍କିତ ଦେବ ଲୁଚିଲେ ଆଶ୍ରମବନ ତେଜି ! ବିଷ୍ଣୁ ନତ ଶିରରେ ଗ୍ରହଣ କଲେ ଶାପ ! ଲଜ୍ଜିତ ଇନ୍ଦ୍ର ହେଲେ ଭୟଭୀତ; ଶୁକ୍ର ତପସ୍ୟାରୁ ଫେରି ଯେତେବେଳେ ଜାଣିବେ ଏ କଥା ! ଅନୁତପ୍ତ ବିଷ୍ଣୁ ଭୃଗୁଙ୍କଠୁ କଲେ କ୍ଷମା ଯାଚନା ! କ୍ରୋଧିତ ଭୃଗୁ ଭଗବାନ ବିଷ୍ଣୁଙ୍କୁ କଲେ ପଦାଘାତ ! ସାଦରେ ଶ୍ରୀହରି ବକ୍ଷସ୍ଥଳରେ ଗ୍ରହଣ କଲେ ଋଷି ପଦାଙ୍କନ ଏବଂ ମହର୍ଷିଙ୍କୁ ପ୍ରଦାନ କଲେ ଆଦ୍ୟ ବ୍ରହ୍ମାସନ !

ପ୍ରୀତ ମହର୍ଷି ସ୍ୱକନ୍ୟା ଶ୍ରୀଙ୍କୁ ବିଷ୍ଣୁଙ୍କୁ କଲେ ସମର୍ପଣ !

ଦେବ ଓ ସ୍ୱର୍ଗର ହିତ ପାଇଁ କନ୍ୟା ଜୟନ୍ତୀକୁ ଇନ୍ଦ୍ର ଦେଲେ ବଳି !

'ପିତୃକୁଳର ହିତ ସାଧନ ପାଇଁ ତୋତେ ମୁଁ ଶୁକ୍ରାଚାର୍ଯ୍ୟଙ୍କୁ ସମର୍ପଣ କରୁଛିରେ ଦୁହିତା ! ତୁ ତୋ ପତିକୁଳର ବି ହିତ ସାଧନ କର !'



Source: Author, Digitized by PPRACHIN, SOA

ଜୟନ୍ତୀ ଯାତ୍ରା କଲା କୈଳାସ ! ଶୀର୍ଷାସନରେ ସ୍ଥିତ କ'ଣ ଧୂମ ସେବନରତ ପତିଙ୍କୁ କଲା ଦର୍ଶନ ! ସ୍ୱେଦସିକ୍ତ ସୌର ରଶ୍ମିତପ୍ତ ଗୌର ତନୁ ଧାରଣ କରିଛି ତାମ୍ରାଭ ! ମଥାନ ଉପରେ ତ୍ୟକ୍ତ ସୂର୍ଯ୍ୟଙ୍କ ଶାଣିତ ରଶ୍ମି ନିଶ୍ୱାସରୁ ଋଷିଙ୍କୁ ରକ୍ଷାକଲା ଉତ୍ତୋଳିତ କରି ବସ୍ତ୍ରଛତ୍ର ! ଅତ୍ୟନ୍ତ ଭକ୍ତିର ସହିତ ପତ୍ରର ପାତ୍ରରେ ସାଇତି ରଖିଲା ସୁଗନ୍ଧିତ ଶୀତଳ ପାନୀୟ ! ରମ୍ଭାପତ୍ରରେ ସ୍ୱେଦଶିକ୍ତ ଗାତ୍ରକୁ ବିଞ୍ଚି ଚାଲିଲା ଅବିରତ !

ସମାପ୍ତ ଏକ ସହସ୍ର ବର୍ଷ !

ଘନଘନ ଶୁଭିଲା ଡମ୍ବରୁର ଡାକ : ହେ ବ୍ରହ୍ମନ୍, ହେ ଭୃଗୁ ପୁତ୍ର ଉଠ, କର ନେତ୍ରୋନ୍ମୋଚିତ ! ତମେ ତପସିଦ୍ଧ ! ଅଭୀପ୍ସିତ ମନ୍ତ୍ର ଏଥର ତୁମ ଭିତରେ ଜାଗ୍ରତ ହେବ ! ଗ୍ରହଣ କର ! ଗଭୀର କୃତଜ୍ଞତାରେ ଶ୍ରୀଗୁରୁଙ୍କୁ ଅର୍ଘ୍ୟ ନିବେଦନ କଲେ ଋଷି ! ଆଶୀର୍ବାଦ ମୁଦ୍ରାରେ ସଦାଶିବ ହେଲେ ଅନ୍ତର୍ଦ୍ଧାନ !

ଉପସ୍ଥିତ ସେବିକାଙ୍କୁ ଦୃଷ୍ଟିର କଟାକ୍ଷ ଢାଳି ଜିଜ୍ଞାସା କଲେ ଋଷି : କାଽସି କାସ୍ୟାସି ସୁଶ୍ରୋଣି ! ବୂହି କିଂ ତେ ଚିକର୍ଷିତମ୍ ?

କିମର୍ଥମିହିଂ ସଂପ୍ରାପ୍ତା କାର୍ଯ୍ୟ ବଦ ବରାରୁ ମେ ! କିଂ ବାଂଛସି ?

କରୋମ୍ୟଦ୍ୟ ଦୁଷ୍କର ଚେତ୍ ସୁଲୋଚନେ ! ପ୍ରାତୋଽର୍ସିମ୍ ସ୍ୱକୃତେନାଦ୍ୟ ବରଂ ବରୟ ସୁବ୍ରତେ !'

ଜୟନ୍ତୀ ନିବେଦନ କଲା ପ୍ରଣାମ ! ମୃଦୁ ମୃଦୁ କିଶଳୟ ଓଷ୍ଠପୁଟ ହେଲା ତା କମ୍ପିତ !

'ହେ ଭଗବାନ୍ ! ଶକ୍ରସ୍ୟାହଂ ସୁତା ! ପିତ୍ରା ତୁଭ୍ୟ ସମର୍ପିତାମ୍ ! ଜୟନ୍ତୀ ନାମତଷ୍ଠାହମ !'

ହେ ବିଭୋ ! ଧର୍ମର ସହିତ ମୋ ପ୍ରୀତିଇଚ୍ଛାର ଶୂନ୍ୟପାତ୍ର ପୂର୍ଣ୍ଣ କରିବା ହୁଅନ୍ତୁ !

ସ୍ୱୀକୃତ ହେଲା !

ଦୀର୍ଘ ଦଶବର୍ଷ ପ୍ରୀତି ଓ ପର୍ବର ମଧୁର ମୁହୂର୍ତ୍ତ ଜୟନ୍ତୀ ସହିତ ! ଅଦୃଶ୍ୟରେ ରହି ହେଲେ ମୈଥୁନିତ !

ସ୍ମୃତିପଟଳରେ ହଠାତ୍ ଦିନେ ଉଦିତ ହେଲା ଦୈତ୍ୟଙ୍କୁ ଦେଇ ଆସିଥିବା ପ୍ରତିଶ୍ରୁତି ! ବ୍ୟଗ୍ର ଶୁକ୍ର ଅସୁର ସାମ୍ରାଜ୍ୟରେ ପହଞ୍ଚି ଯାଇଛନ୍ତି ! ଆଉ ଜଣେ ଶୁକ୍ର, ତାଙ୍କର ଛଦ୍ମ ରୂପ, ଦୈତ୍ୟଙ୍କୁ ପଢ଼ାଉଛି ପାଠ : ଅହିଂସା ପରମ ଧର୍ମ, କ୍ଷମା ଅଟେ ଶ୍ରେଷ୍ଠ, ଆତତାୟୀକୁ ମଧ୍ୟ କର ନାହିଁ ହତ୍ୟା, କାରଣ କ୍ଷମାର ସତୀତ୍ୱ ହୁଏ ନଷ୍ଟ ! ଭୋଜନ କର ନିରାମିଷ !



Source: Author, Digitized by PPRACHIN, SOA

ଆଉ ଶୁଣି ପାରିଲେନି ଶୁକ୍ର ! ଇଏ ଠକ ! ଦେବଗୁରୁ ବୃହସ୍ପତି ଗ୍ରହଣ କରିଛି ତାଙ୍କ ଛଦ୍ମ ରୂପ !

'ମୁଁ ତୁମ ପୁରୋହିତ ଶୁକ୍ର ! ଇଏ ଦେବଗୁରୁ ବୃହସ୍ପତି ଠକ ! ଫେରି ଆସିଛି ମୁଁ ଯଜମାନ !'

କେହି ଶ୍ରବଣ କଲେନାହିଁ ଶୁକ୍ରଙ୍କ ଏ ବଚନ ! ବଦଳି ଯାଇଥିଲା ସାରା ପରିବେଶ !

'ମୁଁ ଦେବି ତୁମକୁ ଅଭିଶାପ !' ଶୁକ୍ରଙ୍କ ଚିତ୍କାରରେ ବୃହସ୍ପତି ହେଲେ ଅଦୃଶ୍ୟ ! ପ୍ରମାଦ ଗଣିଲେ ଦୈତ୍ୟ !

ଶ୍ରୀଗୁରୁଙ୍କ ଚରଣ ବନ୍ଦନା କଲା ଆସି ରାଜା ପ୍ରହ୍ଲାଦ !

'ହେ ଭାର୍ଗବ ! ଆପଣଙ୍କ ଯଜମାନ ଆପଣଙ୍କ ସେବାଲାଗି ଉପସ୍ଥିତ ! ଆପଣ ତାକୁ ତ୍ୟାଗ କରନ୍ତୁନି ! ହେ ସୁବ୍ରତ ! ଆପଣ ମହାଜ୍ଞାନୀ, କ୍ରୋଧ କ'ଣ ଆପଣଙ୍କ ଭୂଷଣ ! ଆମପରି ଅଜ୍ଞାନୀଙ୍କୁ କ୍ଷମାର ଶିକୁଳୀରେ ବନ୍ଧନ କରି ହୁଅନ୍ତୁ ପ୍ରସନ୍ନ !'

'ହେ ଯଜମାନ, ମୁଁ ତୁମକୁ ରକ୍ଷା କରିବି ! ତୁମେ ଭାସିଯିବ ନାହିଁ, ମାତ୍ର ଥରୁଟିଏ ହେବ ପରାସ୍ତ ଏବଂ ପାତାଳକୁ ହେବ ନିର୍ବାସିତ ! ତୁମ ଧୃଷ୍ଟତା ପାଇଁ ଏଇ ମୋ ଦଣ୍ଡ ! ଏହାହିଁ ମୋ ଆଶୀର୍ବାଦ !'

ମୁଁ ଲାଭ କରିଛି ମୃତ୍ୟୁ ସଞ୍ଜୀବନୀ, ଦୈତ୍ୟ, ଦାନବ ଓ ଅସୁର କେହି ଆଉ ମୃତ୍ୟୁ ଲଭିବେନି ! ତୁମ ପରାକ୍ରମ ପରାସ୍ତ କରିବ ଦେବଙ୍କୁ !'

ପଦ୍ମଫୁଲ ପାଖୁଡ଼ା ମେଲେ !

ବର୍ଷା ଋତୁର ଚୁମ୍ବନ ପୁଷ୍କରିଣୀର ଓଠ କରିଦିଏ ବିବର୍ଣ୍ଣ !

ଶୀତ ମାଉସୀ ସନ୍ଧ୍ୟା ଓ ସକାଳକୁ ଟମାଟୋପରି କରିଦିଏ ଲାଲ୍ !

ଗ୍ରୀଷ୍ମ ହସେ ମଲ୍ଲୀପରି ! କ'ଣ ସବୁ ଘଟିଚାଲେ ଯେ, ଜାଣି ହୁଏନାହିଁ କିଛି !

ରାଜା କାଳନେମୀ କନ୍ୟା ବୃନ୍ଦାବତୀ ମେଲେ ଆୟୁଷର ଶାଖା ! ନିଏ ଶିକ୍ଷା !

ପୁତ୍ରି ! ତୁ ତ ଶୁଦ୍ଧ ଆତ୍ମା ! ତୋର ନାହିଁ କିଛି ନାମ ! 'ବୃନ୍ଦା' ଗୋଟାଏ ଶବ୍ଦ ତୋ କନକ ଗାତ୍ର ପଞ୍ଚ ଭୂତରେ ପ୍ରସ୍ତୁତ ! ନା ଇଏ ତୋର, ନା ତୁ ତା'ର ! ପୁଣି ତୁ କାନ୍ଦିଲୁ କାହିଁକି ରାଜନନ୍ଦିନୀ, ଶୋଇପଡ଼ ! ତୁ ଏଇ ଦେହରୂପୀ ଦେଉଳ ଜୀର୍ଣ୍ଣ ଶୀର୍ଣ୍ଣତ୍ୱ ଲାଗି



Source: Author, Digitized by PPRACHIN, SOA

କରନା ମୋହ ! ଶୁଭାଶୁଭ କର୍ମାନୁସାରେ ଏଇ ଦେହ ଜୀବ ହୋଇଥାଏ ପ୍ରାପ୍ତ ! ମାଂସ ନିର୍ମିତ ଏଇ ଦେହ ତ ତୁ ନୁହେଁ, ତୁ ଦେଉଳସ୍ଥ ଦେବତା ! ଦେହଠୁ ଅଲଗା !

କନ୍ୟା ମୋ, ତୁ ସ୍ମରଣ ରଖ, ଯଦ୍ୟପି ସମସ୍ତ ଭୋଗ ଦୁଃଖର ଛଦ୍ମରୂପ ! ମୂଢ଼ ଚିତ୍ତ ତାକୁ ଦୁଃଖ ଦୂରକାରୀ ସୁଖ· ପ୍ରାପ୍ତକାରୀ ବୁଝେ ! କିନ୍ତୁ ଜ୍ଞାନୀ, ଯାହା ଚିତ୍ତ ନୁହେଁ ମୋହଛନ୍ନ ସେ ଏହି ଭୋଗ ଜନିତ ସୁଖକୁ ମାନେ ଦୁଃଖ !

ସ୍ତ୍ରୀମାନଙ୍କ ଆକର୍ଷଣୀୟ ସୁନ୍ଦର ହସ ଅସ୍ଥିଦ୍ୱାରା ସୃଷ୍ଟି ଦାନ୍ତଙ୍କ ପ୍ରଦର୍ଶନ ? ଯାହାକୁ ଅତ୍ୟନ୍ତ ସୁନ୍ଦର ନେତ୍ର କହୁଛୁ ତାହା ମଜ୍ଜାର କଳୁଷତା ! ସ୍ତନାଦି ସୁନ୍ଦର ଅଙ୍ଗମାନ ତୁଚ୍ଛା ମାଂସଗ୍ରନ୍ଥି ! ପୁରୁଷ ସ୍ତ୍ରୀଠାରେ ମୋହ ଭାବରେ ଯେଉଁ ଅନୁରାଗ ରଖୁଛି ତାହା କ'ଣ ତା'ର କୁତ୍ସିତ ପିପାସା ନୁହେଁ ଏକ ପ୍ରକାର ଅସ୍ଥି ଓ ମାଂସପ୍ରତି ? ମାଂସ ଓ ଚର୍ମର ରଙ୍ଗରୁ ମିଳେ କେଉଁ ତୃପ୍ତି ?

ପୃଥିବୀ ଉପରେ ସବାରୀଯାଏ ! ସବାରୀ ଭିତରେ ବସେ ଏଇ ଦେହ ! ଦେହର ସବାରୀ ଭିତରେ ସେମିତି ଆସେ ଅନ୍ୟଜଣେ ପୁରୁଷ, ସିଏ ତୋର ସ୍ୱାମୀ !

ତୁ ଜନ୍ମ ହୋଇଛୁ- ବଞ୍ଚିବୁ ! ତୋ ଏଇ ବଞ୍ଚିବା ଯନ୍ତ୍ରଣାର ଅନ୍ୟ ନାଁ ? ନା ! ନା, ତୁ ଜୀବନକୁ ଦେଖି ପାରୁନୁ ! କାରଣ ଜୀବନ ଏତେ ସରଳ ଓ ସ୍ୱଚ୍ଛ ଯେ ତାକୁ ଦେଖିହୁଏ ନାହିଁ ରେ ଝିଅ ! ଜୀବନ ମାନସିଂହଙ୍କ 'ଧୂପ', ତାକୁ ଗାଆ ଯାଇହୁଏ ! ଜୀବନ ସୋନାଲି ମାନସିଂହର ନୃତ୍ୟ, ତାକୁ ନଚାଯାଇ ହୁଏ ! ତାକୁ ଖୋଜି ପାଇଯାଇ ହୁଏ ନାହିଁ, ଖାଲି ଜୀଇ ଯାଇହୁଏ !

ମୁଁ ବର୍ତ୍ତମାନ ବାଳକ ବା ବାଳିକା, ଏବେ ମୋର ଖେଳିବାର ଦିନ ! ଯୌବନାବସ୍ଥା ଆସିଲେ କରିବି କଲ୍ୟାଣ ସାଧନ; ଭାବେ ଯିଏ ଏହା ତା' ଦୂରାଶା ! ବର୍ତ୍ତମାନ ମୋର ଯୁବାବସ୍ଥା ! ଯୌବନର ରଙ୍ଗ ଉଭେଇ ଗଲେ ଆଉ କି କରିହେବ ଉପଭୋଗ ? ଏବେ କାଳ ହରିବି କରି ଯୁବତୀ ସଙ୍ଗ ! ଯେତେବେଳେ ପହଞ୍ଚିଛି ବାର୍ଦ୍ଧକ୍ୟ ଭାବୁଛି ସେ; ମୋ କର୍ମେନ୍ଦ୍ରିୟ ଶିଥିଳ, ଇନ୍ଦ୍ରୟମାନେ ହେଉ ନାହାନ୍ତି କର୍ମରେ ପ୍ରବୃତ୍ତ ତ ମୁଁ କରିବି କ'ଣ ? ଏହା ମୋ ଚତୁର୍ଥ ! ସଶକ୍ତ ଥିଲା ବେଳେ କିଛି କରାଯାଇ ପାରିଥାନ୍ତା ହୁଏତ !

ସେ ଏହିପରି ତ୍ୟାଗ କରେ ସ୍ୱ କଲ୍ୟାଣ ସାଧନ ପଥ !

ତୋତେ ଏଇ ପାରମ୍ପରିକ ଜୀବନର ସେତୁଟିକୁ ପାରି ହୋଇ ଯିବାକୁ ହେବ !



Source: Author, Digitized by PPRACHIN, SOA

ଚତୁର୍ବିଂଶ ବର୍ଷ ବୟସ୍କା ରୂପସୀ ବୃନ୍ଦାବତୀ ସଦ୍ୟ ସାଙ୍ଗପାଙ୍ଗ ଅଧ୍ୟୟନ କରିଛି ସମାପ୍ତ ! ଅବିଚଳିତ ବ୍ରହ୍ମଚର୍ଯ୍ୟର କ୍ଷୁରଧାରରେ ଚାଲିଛି ପାଦ ! ଅଭ୍ୟାସ କରୁଛି ବଞ୍ଚିବାର ଛନ୍ଦ !

ଯୋଗ୍ୟ ଯୋଗ୍ୟେନ ଯୋଜୟେତ୍ !

ବିଦ୍ୟୁତ୍ ବରଣ କରେ ଶ୍ୟାମଘନ; ଶ୍ୟାମଳୀ ପୃଥିବୀକୁ ଆଶ୍ଳେଷି ଆକାଶ ଦିଏ ଚୁମ୍ବନ ସଘନ।

ହେଲା ସ୍ଥିର : ବୃନ୍ଦା ବରଣ କରୁ ଜଳନ୍ଧର ! ତା' ସମ୍ପର୍କର ଫଗୁଆରେ ବନ୍ଦୀ ରହୁ ପୁରୁଷର ଭାଗ୍ୟ ଡୋର !

ମୃଦୁସୁଲୀ ଦେଇଗଲା ସମ୍ବାଦ ! ଲାଜୁଆ ଲାଗିଲା ପବନ ! ଶାରୀ କଣ୍ଠରୁ ଶୁଭିଲା କାମୋଦୀ ! ମୟୁରୀ ଉର୍ଦ୍ଧ୍ୱକୁ ପୁଚ୍ଛ ଉତ୍ତୋଳିତ କରୁଛି ! ରାବୁଛି ମୟୂର ! ବର୍ଷା ନା ବସନ୍ତର ଏ ସ୍ୱର ?

ନିଃସଙ୍ଗ ମୁହୂର୍ତ୍ତରେ ଚମକି ପଡୁଛି ଜେମା ! ମୁକୁର ସାମ୍ନାରେ ମୁକୁଳା ହୋଇ ଯାଉଚି ବକ୍ଷ ପଦ୍ମକୁଡ୍‌ମଳ ସୁଷମା ! ସଂଯୋଜିତ କରୁଛି ସଂଯତ ମନର ଦୀପରେ କିଏ ଅଗ୍ନି !! ପଥହୁଡ଼ି ଯିବ ନଦୀ ? ପର୍ବତ ଚୂଳରେ ଗୁରେଇ ହୋଇ କାଦମ୍ବିନୀ ବର୍ଷିଯିବ ଅସରା ଅସ୍ରା ଅସ୍ରା ପୟ ପ୍ରଣୟ !

ଜେମା ସ୍ୱପ୍ନ ଦେଖୁଛି : କନକ ବିଦ୍ୟୁତ୍ ବରୁଛି ଶ୍ୟାମ ଜଳନ୍ଧର ! ତା' ମନର ମଣିଷ ! ନୀଳମେଘ କରୁଛି ଶପଥ ପାଠ : ଗୃହ୍‌ଣାମି ତେ ସୌଭାଗତ୍ୱାୟ ହସ୍ତଂ ମୟା ପତ୍ୟାଜ୍ଜରଦଷ୍ଟି ଯଥାସଃ ! ଭର୍ଗୋ ଅର୍ଯମା ସବିତା ପୁରଂଧି ର୍ମହୟଂ ତ୍ୱା ଦୁର୍ଗାର୍ହପତ୍ୟାୟ ଦେବାଃ !

ବଧୂ, ମୁଁ ବର ତୋ ହସ୍ତ ସୌଭାଗ୍ୟ ଲାଭ ପାଇଁ କରୁଛି ଧାରଣ। ତୁ ମୋ ସହିତ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ କର ନିବାସ ! ଜଗଦ୍‌କର୍ତ୍ତା ପରମେଶ୍ୱର, ନ୍ୟାୟକାରୀ ସବିତା, ତୋ ପିତା ତଥା ଉପସ୍ଥିତ ଏହି ଲଳନାଗଣ ଓ ବିଦ୍ୱାନବୃନ୍ଦ ତୋତେ ଗ୍ରାହ୍ୟସ୍ଥ ପାଇଁ ମୋତେ ସମର୍ପିତ କରୁଛନ୍ତି ! ତରଭୁଜ ପାଚିଲେ ଯେପରି ସ୍ୱତଃ ବେଲଠାରୁ ଭିନ୍ନ ହୋଇଯାଏ ସେହିପରି ଏଇ ବିବାହର ପୁରୋହିତ ତୋତେ ପିତୃଗୃହରୁ ଅଲଗା କରନ୍ତୁ ପରଂତୁ ପତି ବନ୍ଧନରୁଭିନ୍ନ କରୁନାହାନ୍ତି ! ତୁ ଉଷାକାଳପରି ସୁନ୍ଦର, ଶୀତଳ ଓ ପବିତ୍ର ରୁହ !

ନାରୀ ପାଇଁ ବିବାହ ଏକ ସଂସ୍କାର ! ପୁରୁଷ ପାଇଁ ଏହା ଏକ ପବିତ୍ର ବନ୍ଧନ !

ଦୁହିତା- ଦୂରେ ହିତା ବା ପିତ୍ରାଳୟଠୁ ଦୂରରେ ପତିଗୃହ ହିଁ ତା ହିତ ଓ ପତିଗୃହର ସିଏ ହିତା। ଯଜ୍ଞ ସମ୍ବନ୍ଧ ହେତୁ ସେ ବିବାହିତା ପତ୍ନୀ ! ତା' ବ୍ୟକ୍ତିତ୍ୱର ସ୍ୱତନ୍ତ୍ରତା ନଥିଲେ ବି


Source: Author, Digitized by PPRACHIN, SOA

ସମ୍ମାନ ରହିଛି ! 'ବୋହୂଟିଏ !' 'ଇୟଂ ବହନ୍ତୀ !' ତୁମେ 'ମହିଳା' ଅର୍ଥାତ୍ ପୂଜନୀୟା !

ମାୟାର କୁହୁଡ଼ି ଢାଙ୍କିଛି ଯେମିତି ସାରା ସହର ! କିଏ ଏଠି କାହାର ? କୁହୁଡି ଭିତରେ ସଂପର୍କ ମେଲିଥାଏ ଡାଳ !

ସୌଭାଗ୍ୟକୁ ସହ୍ୟ କରେନା ଈର୍ଷାଳୁ ସମୟ ! ସବୁଜ ପତ୍ରରେ ଚହଟାଇ ପୀତ ପ୍ରୀତ ବୃକ୍ଷକୁ ବି କରିଦିଏ ନିପତ୍ର ! ପୁଷ୍ପରୁ ଖସାଇ ପକାଏ ପାଖୁଡ଼ା ଏବଂ ଦିନେ ବୃନ୍ତରୁ ଖସି ପଡ଼େ ପୁଷ୍ପ; ଆଉ ଦିନେ ଡାଳରୁ ବି ବୃନ୍ତ !

ଏଇ ଜୀବନ ପାଦପ ! ଏଇ ସମୟର ନିଜ ବ୍ୟାକରଣ !

ବହୁ ମଣି, ମୁକ୍ତା ଓ ହୀରକ ଖଚିତ ସ୍ୱର୍ଣ୍ଣ ସ୍ୟନ୍ଦନ ସ୍ଥିର ହୋଇ ଠିଆ ହେଲା ଗରୁଡ଼ ସାମ୍ନାରେ ! ପୃଥିବୀର ଛାଇ ପଡ଼ିଲା ଅଂଶୁମାଳୀଙ୍କ ଜ୍ୱଳନ୍ତ କାୟାର କନକ ଆଲିରେ ! ଦୁଇଟି ହସ୍ତ ସମ୍ମୁଖୀନ ଚାରୋଟି ହସ୍ତର ଆକ୍ରମଣ ଓ ପ୍ରତି ଆକ୍ରମଣ ! ଅସ୍ତ୍ର ଯୁଦ୍ଧ, ଶସ୍ତ୍ର ଯୁଦ୍ଧ, ମୁଷ୍ଟି ଓ ମଲ୍ଲ କୌଶଳ ପରେ କୌଶଳ ! ରଣ ପ୍ରମତ୍ତ ହସ୍ତୀ ଯୁଗଳ !

କନକ ଗିରିଚୂଳରୁ ତଳକୁ ଗଡ଼ି ଆସୁଥିଲେ ବଡ଼ବଡ଼ ପଥର ଦି'ଖଣ୍ଡ !

ମହାବଳୀ ଜଳନ୍ଧର ! ଅପାର ବୀରତ୍ୱ ତୁମର ! ପ୍ରକୃତରେ ତୁମେ ମୋ ବାନ୍ଧବ ଶ୍ରୀଙ୍କ ସହୋଦର ଜଳଧି କୁମର ! ନ ବୁଝି ଏତେ ବିବାଦ କଲୁ ଆମ୍ଭେ ! ସାଧୁଶୀଳ ହୁଅନ୍ତିନି ଘଟଣା ବା ଦୁର୍ଘଟଣା ପାଇଁ ଦୁଃଖିତ ! ଘଟଣା କାଳ କବଳିତ ! ଯଦିଓ ନୁହେଁ, ଏହା ଏକ ଦୁଃସ୍ୱପ୍ନ ଆମ ହୋଇଗଲା ଶେଷ ! ମୁଁ ପ୍ରୀତ, ମାଗ ଗୋଟେ ବର ଏବଂ ଭଗ୍ନୀପତି ରୂପେ ମୋତେ ଥରେ ଆଲିଙ୍ଗନର ସୌଭାଗ୍ୟ ସମର୍ପିତ କର !

ଶ୍ରୀହରିଙ୍କ ସମ୍ଭାଷଣ ରଣକ୍ଳାନ୍ତ ଜଳନ୍ଧରକୁ ବୋଧ ହେଲା ବାଣୀ ନୁହେଁ ଏହା ଶୀତଳ ଚନ୍ଦନ ! ଶୀତଳ ପବନ !

କଟୁ ଭାଷଣ, କଠୋର ଦଣ୍ଡ, ଧନ ଅପବ୍ୟୟ, ମଦ୍ୟପାନ, କାମାଶକ୍ତ, ଆଳସ୍ୟରେ ବୃଥା କାଳକ୍ଷେପଣ ଓ ଦ୍ୟୁତକ୍ରୀଡ଼ାରତ– ସପ୍ତ ବ୍ୟସନ ତ୍ୟାଗି ତୁମେ ମହାବଳୀ ଇନ୍ଦ୍ରଜିତ ! ତୁମ ସ୍ଥାନ ଇନ୍ଦ୍ରଠୁ ବହୁ ଉର୍ଦ୍ଧ୍ୱରେ ! ମାଗ ଯାହା ତୁମ ଇଚ୍ଛା ହେ ମୋର ପ୍ରିୟ ସଖା !

ହେମଗିରି ଗୁହାରେ ବନ୍ଦୀ ଇନ୍ଦ୍ର ଓ ଦେବଗଣ ଭୋଗୁଛନ୍ତି ସେମାନଙ୍କ ଅକର୍ମର ଫଳ ! ଏବେ ମୋ ପ୍ରତି ପ୍ରୀତ ଶ୍ରୀହରି, ଶ୍ରୀଙ୍କ ସହିତ ଚଳନ୍ତୁ ମୋ ପୁର ! ଘର ମୋର ହେଉ ବୈକୁଣ୍ଠସମାନ !



Source: Author, Digitized by PPRACHIN, SOA

ତଥାସ୍ତୁ ! ସାଧୁ, ସାଧୁ ! ଯୁଗେ ଯୁଗେ ଶ୍ରୀ ଅଂଶୀ ନାରୀଙ୍କ ଉପସ୍ଥିତି ହେତୁ ନର ନାରାୟଣଙ୍କ ଘର ହେବ ସୁନ୍ଦର ବୈକୁଣ୍ଠ ସମାନ ! ବିରାଜିବ ସ୍ନେହପ୍ରୀତି ମଧୁର ମିଳନ ! ଘରର ପ୍ରତିଶଦ୍ଦ ଟିଏ ହେବ ମନ୍ଦିର !

ସ୍ୱର୍ଗ ଅବତରିଲା !

ଦେବାବତରଣ ପାଇଁ ଜଳନ୍ଧର ଭୂମିକାଠୁ ଶକ୍ତ ଥିଲା ବୃନ୍ଦାର ତପସ୍ୟା ! ବୃନ୍ଦା ଆବାହନ କରିଥିଲା ସେହି ସର୍ବୋତ୍ତମ ଜ୍ୟୋତି ଓ ପରମ ଶକ୍ତିଙ୍କୁ ! ଊର୍ଦ୍ଧ୍ୱରୁ ପ୍ରତ୍ୟୁତ୍ତର ଦେଇ ପରମ କରୁଣା ଓ ଆଲୋକ ପ୍ରତିରେଣୁ, ଶିଳା, ଶାଖା, ତୃଣ, ପ୍ରାଣ ଓ ପଶୁଙ୍କୁ କରିଦେଲା ଏକରୂପ ! ସୃଷ୍ଟିରେ ସ୍ରଷ୍ଟାର ବିମ୍ବ ! ପୁତ୍ର ପିତାର ବାମନ ରୂପ !

ଅମୃତରୁ ଅମୃତ !

'ପ୍ରିୟ ସଖି ! ମୁଁ ଆସିଛି !' ଅଭୀପ୍ସାର ଆବେଦନକୁ ପ୍ରତ୍ୟୁତ୍ତର ଦେଲା ଆଲୋକ ! 'ମୋ ପାଇଁ ମହଲ ପ୍ରସ୍ତୁତ କରିଛ ?' ପ୍ରତି ପ୍ରୀତି ଉତ୍ତର ଦେଲା ଆତ୍ମା : 'ମହଲର ମହଲା କେଉଁଠି ମୁଁ ରଚିବି, ତୁମେ ଯେ ସର୍ବବ୍ୟାପ୍ତ ! ଏକ ପାଦ ଭୂମି ପାଇଁ ପୃଥ୍ୱୀ ଓ ଆକାଶ ତ ନିଅଣ୍ଟ, ତୁମ ପାଇଁ ସ୍ଥାନ କାହିଁ ପ୍ରଭୋ !'

'ତେବେ ?'

'ମୋ ଭଲପାଇବାର ଅମ୍ଳାନ କନକ କୋକନଦ ବେଢ଼ାକୁ ଆବାହନ କରୁଛି ତୁମକୁ, ପ୍ରିୟ ! ଆଲୋକର ରେଣୁଟିଏ ହୋଇ ତମେ ଆସ ! ମୋ ଶୀତଳ ପାଖୁଡ଼ାର ବାହୁରେ ତମକୁ ମୁଁ ସାଇତି ରଖିବି ଯୁଗଯୁଗ! ହେ ଅତିଥି, ତୁମେ ତ ମୁଁ !'

ଶତଶତ ପୂର୍ଣ୍ଣ ସ୍ୱର୍ଣ୍ଣ କୁମ୍ଭ ! କର୍ପୂର ଓ ଚନ୍ଦନ ମିଶ୍ରିତ ସୁବାସିତ ଶୀତଳ ପୂତ ସଲିଳ ! ଦୂର୍ବା, ଅକ୍ଷତ, କୁସୁମ ଓ ପ୍ରଦୀପିତ ଶତଶତ ଦୀପମାଳା କନକ ପାତ୍ରରେ ! ଲବଙ୍ଗମାଳ, ନାରୀକେଳ ଜଳ ଓ ଆର୍ଦ୍ର କ୍ରମୁକ ପ୍ରସ୍ତୁତ ସତ୍କାରମାନ ! ନବବସ୍ତ୍ର ଓ ଭୂଷଣ ଅପର୍ଯ୍ୟାପ୍ତ !

ଶ୍ୱଶୁରାଳୟରେ ପଦାର୍ପଣ କରିଛଂତି ଜାମାତା !

ବହୁଦିନ ପରେ ଝିଅ ଆସିଛି ତା' ବାପ ଘରକୁ !

'ଏତେ ଦିନେ ମୁଁ ମନେ ପଡ଼ିଲି, ନାଇଁ ମା' ?'

'ସଂସାରରେ ବ୍ୟସ୍ତତାମୁକ୍ତ କିଏ ବାପା ? କର୍ମର ଓଁକାର ସମସ୍ତଙ୍କୁ କରିଛି ଆବଦ୍ଧ !'

'ଚିର ମୁକ୍ତ ବ୍ରହ୍ମାନନ୍ଦ ମଧ୍ୟ ମନ୍ତ୍ରରେ ବନ୍ଦୀ ! ଆମେ ବୃନ୍ଦା ଓ ବନ୍ଧୁ ଜଳଧରଙ୍କ ଶ୍ରଦ୍ଧାକୁ



Source: Author, Digitized by PPRACHIN, SOA

ପ୍ରତ୍ୟାଖ୍ୟାନ କରି ପାରିଲୁନି ! ତେବେ ଆପଣଙ୍କ ଦର୍ଶନ ଅଭିଳଷିତ ବି ଥିଲୁ ଅନେକ କାଳୁ, ପିତା !'

'ମୁଁ ଶିଶୁ ଜଳନ୍ଧର କି ଯୋଗୀ ନୁହେଁ ଶ୍ରୀହରି, ତୁମ ଶବ୍ଦର ସୁବାସରେ ଯିବି ପହଁରି !' ହସିଲେ ଜଳଧି !

ନୀରବ ବୃନ୍ଦା ! ଯଜ୍ଞରୁ ଉତ୍ଥିତ ଶାଣିତ ଲେଲିହାନ ଆରକ୍ତଶିଖା !

'କିଛି ମାଗିବନି ସଖି ?' ଶ୍ରୀହରିଙ୍କ ଚକ୍ଷୁରେ ପ୍ରଶ୍ନବାଚୀ !

ସେ ମାଗିବ, କ'ଣ ମାଗିବ ! 'ମାଗିବି ସଖା, ମାଗିବି !'

'ମାଗ !'

'ତମକୁ.... ଖାଲି ତମକୁ ! ତମେ ମତେ ଦେଇ ଦିଅ ନିଜକୁ, ଆଉ.... ଯଦି ମୁଁ କିଛି ଦେବି ତାହା ବାକି ଥିବା ନିଜକୁ ! ନିଅ ! ନିଅନା !'

'ତମ ଶ୍ରଦ୍ଧା, ମେଧା, ଭଲ ପାଇବା ଓ ଜ୍ଞାନର ସମର୍ପିତ ମୁଦ୍ରା ବିନିମୟରେ ମୁଁ କ୍ରୀତ ହୋଇ ଯାଇଛି ! ତମେ ନାରୀ ନୁହଁ, ଗାରେ ଅବ୍ୟକ୍ତ ମନ୍ତ୍ର ! ତମକୁ ପାଇ ଜଳନ୍ଧର ମୃତ୍ୟୁ ରହିତ ! ପ୍ରିୟ ସଖି, ମୋ ଅଭିନନ୍ଦନ ଘେନ !

ନା-ରଦ, ଦନ୍ତହୀନ ବୟସ୍କ, ଚୌବେଦ, ଏକଶତ ଅଷ୍ଟ ଉପନିଷଦ ଓ ବିଂଶ ସ୍ମୃତି ବିଶାରଦ, ଭ୍ରାମ୍ୟମାଣ ସଙ୍ଗୀତଜ୍ଞ ଭାବେ ବାଣୀଙ୍କ ନିକଟତମ, ଶ୍ରୀହରିଙ୍କ ଅନ୍ତରଙ୍ଗ, ସତ୍ୟଭାଷି, ମୃଦୁ ହାସି ଅସୀମ ବୁଦ୍ଧି ସମ୍ପନ୍ନ ସେ ! ସାମ୍ନାରେ ତାଙ୍କ କୌତୁହଳ : ଅନନ୍ତ ନାଗର ମୁଲାୟମ ଶେଯ, ଫଣାର ସୁଶୀତଳ ଛାୟା, ଶ୍ରୀଙ୍କ ସେବା ଓ ସରସ୍ୱତୀଙ୍କ ମୃଦୁ୍ୟ ବୀପଞ୍ଚି ସ୍ୱର୍ଶରେ ଯା ନିଦ୍ରା ! ଜଳନ୍ଧର ପୁର ଦେଲା ତାଙ୍କୁ କେଉଁ ପ୍ରେମମିଶ୍ରିତ ଭକ୍ତିର ଶାନ୍ତି, ପ୍ରଭୁ ରହିଗଲେ ସେଇଠି ?

ମୃଗୟା, ପାନ ଓ ଭକ୍ଷ୍ୟ ଅଭକ୍ଷ୍ୟ ପ୍ରତି ଜଳନ୍ଧର ସଚେତନ ! କାମ, କ୍ରୋଧ, ମଦ, ମାନ, ମୋହ ଓ ଦର୍ପତ୍ୟାଗି, ସେ ପ୍ରଜାପ୍ରିୟ ଯେମିତି ଜଣେ ଆତ୍ମୀୟ ! ମନ୍ତ୍ରୀ ଶୁକ୍ର; କି ସୁନ୍ଦର ପରାମର୍ଶ ତାଙ୍କ; ପ୍ରଶାସନକୁ କରୁଛି ନିୟନ୍ତ୍ରିତ !

ହୀରା, ଇନ୍ଦ୍ରନୀଳ, ମରକତ, ପଦ୍ମରାଗ, ମୁକ୍ତା, ବୈଦୁର୍ଯ୍ୟ, ଚନ୍ଦ୍ର ଓ ସୂର୍ଯ୍ୟକାନ୍ତମଣି, ସ୍ଫଟିକ, ପୁଷ୍ପରାଗ, ଗଜ-ଶଙ୍ଖ, ବ୍ରହ୍ମମୟ-ଗୋମେଦ, ପୀତ ପ୍ରବାଳ, ଗିରିବଜ୍ର, ଭୁଜଙ୍ଗମ ମଣି, ରୌପ୍ୟ ଓ ସ୍ୱର୍ଣ୍ଣ ଅମାପ ! ରାଜ୍ୟ ତା' ଶ୍ରୀଙ୍କ ବାସସ୍ଥଳୀ !



Source: Author, Digitized by PPRACHIN, SOA

ନାରଦ ଶ୍ରୀହରିଙ୍କୁ କଲେ ଦର୍ଶନ !

'ଏଠି ନାହିଁ କ'ଣ ନାରଦ ?' ପ୍ରଶ୍ନ କଲେ ଶ୍ରୀହରି !

'ନାହିଁ ?.... ନାହିଁ ଦେବପୁରରେ ବ୍ୟାପ୍ତ ଅନାଚାର ପ୍ରଭୁ !'

'ଜଳନ୍ଧର ଦେବସୁତ; ତୁମେ ତ ଜାଣିଛ !' ଶ୍ରୀହରିଙ୍କ ଶ୍ରୀମୁଖରେ ହାସ୍ୟର ତଡ଼ିତ୍ !

'ପୁଣି ଦେବଶତ୍ରୁ ! ଆଦର୍ଶ ହୋଇ ରହିବେ ଚିରକାଳ ଦେବତା, ଦୈତ୍ୟ ରଞ୍ଜନ ଜଳନ୍ଧର ନୁହେଁ, ପ୍ରଭୁ !' ସୁବିନୀତ ଓ ମଧୁର ସ୍ୱରରେ ନିବେଦନ କରୁଥିଲେ ନାରଦ !

'କ'ଣ କରାଯିବ; କ'ଣ ଆଉ କରାଯାଇ ହେବ !' ଚିନ୍ତିତ ଥିଲେ ବୈକୁଣ୍ଠପତି !

'ଅନନ୍ତ ଲୀଳା ନିଧନ ହେ ସଗୁଣ ଓ ନିର୍ଗୁଣାତ୍ମକ, ଅନିର୍ଦ୍ଦେଶ୍ୟ, ବାଣୀ ଅତୀତ, ଶୁକ୍ଳବର୍ଗ; ମମତାର ଲେଶମାତ୍ର ହୀନ, ରୂପ, ନାମ ଓ ବର୍ଣ୍ଣ-ସମସ୍ତ କଳ୍ପନାମୟ, ଯୋଗୀ ଅନୁଭବ ଊର୍ଦ୍ଧ୍ୱ, ଚିରକାଳ ବିରାଜ ପବିତ୍ର ପଦ ହେ ବାସୁଦେବ ! ଆରମ୍ଭର ଶେଷ ଥାଏ; ହେ ଅଶେଷ ! ଧର୍ମ ସଂସ୍ଥାପନ ଓ ପାପି କ୍ଷୟୀ ମୂର୍ତ୍ତି ରୂପେ ତୁମେ 'ପ୍ରଦ୍ୟୁମ୍ନ' ! ପୃଥିବୀ ଅଶ୍ରୁଳା ! ତୁମର ଆବିର୍ଭାବ ତା' ପାଇଁ ସାନ୍ତ୍ୱନା ! 'ଶେଷ' ନାମରେ ବସୁଧାକୁ ବସୁଦେବ ପରି ତୁମେ ମୁଣ୍ଡେଇ ଧରିଛ ! ପୁଣି ପନ୍ନଗ ଶେଯରେ ଜଳରେ ଶାୟିତ ରଜୋଗୁଣଯୁକ୍ତ ହେ ଅନିରୁଦ୍ଧ, ତୁମେ ସୃଷ୍ଟି କାର୍ଯ୍ୟରତ ! ତୁମେ ଏଠି କିଛି କରୁନା, କିନ୍ତୁ ତୁମ କର୍ମର ଚକ୍ର ଘୂରୁଛି ତ ? କ'ଣ କରାଯିବ ଓ କ'ଣ କରାଯାଇ ହେବ ଉକ୍ତ ପରାମର୍ଶ କ'ଣ ନାରଦ ଦେବ ?'

'ସମୟର ମହାଜନଙ୍କୁ ଅପେକ୍ଷା କର ନାରଦ ! ବୋଇତରେ ସେ ଆଣି ଆସିଛି ଘଟଣାର ପସରା ! ତା' ପରେ ଆମ୍ଭମାନଙ୍କ ଭୂମିକାନୁଯାୟୀ ଆମେ ଅଭିନୟ କରିଯିବା !'

ବ୍ୟକ୍ତି ସୃଷ୍ଟି କରେ ଘଟଣା ! ଘଟଣା ଆସେନି, ଆସେ ସମୟ ! ଯାହା ଘଟଣା ପାଇଁ ଥାଏ ଅନୁକୂଳ ! କେହି କ'ଣ ଭାବିଥିଲେ ହିରଣ୍ୟକଶିପୁଠୁ ହେବ ପ୍ରହ୍ଲାଦର ଜନ୍ମ ! ଦୁର୍ଲ୍ଲଭ ଅଜର ଅମର ବର ଅଭିଳାଷୀ ଯାଇଥିଲା କଠୋର ସାଧନା ପାଇଁ ମନ୍ଦରଗିରିକୁ ! ଇନ୍ଦ୍ର ଏହି ସୁଯୋଗରେ ଧ୍ୱଂସ କରି ଦେଲା ତା' ରାଜଧାନୀଟାକୁ ! ଅନ୍ତସତ୍ତ୍ୱା ଗର୍ଭବତୀ ପାଟମହିଷୀକୁ ଧ୍ୱଂସ ରାଜପ୍ରାସାଦ ଭିତରୁ ଆଷାଢ଼ ମେଘ ଆଢୁଆଳ ଚନ୍ଦ୍ରପରି ଘୋଷାଡ଼ି ଆଣିଲା ପଦାକୁ ! ଗର୍ଭବତୀର ନରମ ପିଠିର କନକ ପତ୍ରରେ ଲମ୍ୱିଗଲା ନିଷ୍ଠୁର ବେତ୍ରାଘାତ ଧାର ! ଧାରଧାର ଗାର ବକ୍ର ଓ ସରଳ ! ତା' ଅପରାଧ ତା' ଗର୍ଭରେ ବଢୁଛି ଦାନବର ଅନ୍ୟ ଏକ ଅପ୍ରତିଦ୍ୱନ୍ଦ୍ୱି ଦୁର୍ଦ୍ଧର୍ଷ ମୂର୍ତ୍ତି !!



Source: Author, Digitized by PPRACHIN, SOA

ସେଦିନ ଇନ୍ଦ୍ର କବଳରୁ ନିର୍ଯ୍ୟାତିତାକୁ ଉଦ୍ଧାର କରି ନେଇଗଲେ ନିଜ ଆଶ୍ରମକୁ ଏଇ ନାରଦ !

କ୍ଳେଶ ଲାଘବ ପାଇଁ ପରମ କରୁଣାମୟଙ୍କ ମହିମା ଗାନ ଶୁଣାଇଥିଲେ ସଙ୍ଗୀତଜ୍ଞ ! ଗର୍ଭସ୍ଥ ଦାନବ ବୀଜ ନାମ ମହିମାରେ ନେଲା ଭିନ୍ନ ରୂପ ! ହେଲା ଭିନ୍ନ ନକ୍ସା ! ସ୍ୱତଃ ପଦ୍ମପରି ବିକଶି ଉଠିଲା ଭକ୍ତି ! ଅସୁର ରାଜପୁତ୍ର ହେଲା ଋଷି ! ପାର୍ଶ୍ୱରେ ତା' ବିଶୋଭିଲା ଭକ୍ତିର ଅସୀ ! ଆଉ ଜଳନ୍ଧର.... !!

ନାରଦ ବିଷ୍ଣୁଙ୍କ ଅଭିନ୍ନ ଦେହୀ ! ପ୍ରଜାପତିଙ୍କ କଣ୍ଠଜ ସର୍ବ କନିଷ୍ଠ କିନ୍ତୁ ଭାରି ଜିଦ୍‌ଖୋର ! ମରୀଚୀ, ଅତ୍ରି, ଅଙ୍ଗିରସ, ପୁଲସ୍ତ୍ୟ, ପୁଲହ, ଭୃଗୁ, ସମସ୍ତେ ବେଦାଧ୍ୟାୟୀ ପ୍ରଜାପତି ବ୍ରହ୍ମାଙ୍କ କଣ୍ଠଜ ! କିନ୍ତୁ ନାରଦ; ସେ କହିଲେ ଶିଖିବେ ସଙ୍ଗୀତ ! ନା ବେଦ !

ପ୍ରଥମ ଶିକ୍ଷକ ହେଲେ ପିତା ! ତା' ପରେ ଗୁରୁ ହେଲେ ସଙ୍ଗୀତ ସମ୍ରାଟ ଗନ୍ଧର୍ବ ଉଲ୍ଲୁକେଶ୍ୱର ! ବୀପଞ୍ଚି ତାଙ୍କ ବର୍ଷିଲା ମୂର୍ଚ୍ଛନା ନୁହେଁ, ଜ୍ୟୋସ୍ନା ! ସଙ୍ଗୀତ ନୁହେଁ, ସୁଧୁ ମନ୍ତ୍ର ! ସରସ୍ୱତୀଙ୍କ ବାଦନ ଶ୍ରବଣପଟୁ କର୍ଣ୍ଣ ଯୁଗଳ ନାରଦଙ୍କ ମୂର୍ଚ୍ଛନାରେ ହେଲା ପୁଲକ ବିହ୍ୱଳ !

ଦିନେ ନୃତ୍ୟରତା ରମ୍ଭା ଦେବସଭାରେ ନାରଦଙ୍କୁ କଲା ଆନମନା ! ମୃଦଙ୍ଗମ ତାଳ ଓ ମୈଥୁନ ପ୍ରତୀକ୍ଷିତ ରମ୍ଭାର ରୁଚିର ପୃଥୁଳ ଜଘନ ଓ ଛନଛନ ସ୍ତନ କାମୋନ୍ମତ୍ତ ନାରଦଙ୍କ ବାସକଲା ରେତସିକ୍ତ ! ପ୍ରଜାପତି ପୁତ୍ରର ଏତାଦୃଶ ସ୍ଖଳନ ସ୍ୱଭାବ ଲକ୍ଷ୍ୟ କରି ଦେଲେ ଅଭିଶାପ !

ଗନ୍ଧମାର୍ଦ୍ଦନସ୍ଥ ଗନ୍ଧର୍ବ ପଲ୍ଲୀରେ ଉପବର୍ହଣ ନାମରେ ହୁଅ ଜାତ ! ଗନ୍ଧର୍ବରାଜ ଚିତ୍ରରଥଙ୍କ ପଚାଶଟି କନ୍ୟାଙ୍କଠି ପୂର୍ଣ୍ଣ ହେବ ତୁମ କାମନା ଚରିତାର୍ଥର ଭଗ୍ନାଂଶ !

ପଚାଶଟି କାମୁକୀ ଯୁବତୀ ନିଜର ଉନ୍ନତ ସ୍ତନପରି ସଙ୍ଗୀତଜ୍ଞ ଉପବର୍ହଣଙ୍କୁ ପ୍ରୀତିର ମୂର୍ଚ୍ଛନାରେ ରଖିଲେ ସାଇତି ! ତୃଷ୍ଣା ତୃପ୍ତିରେ ଦିନେ ଆସିଲା ବିତୃଷ୍ଣା ! ବହୁ ଭୋଗ ଆଣିଦେଲା ବୈରାଗ୍ୟ ! ସେ ହେଲେ ଶାପମୁକ୍ତ ନାରଦ !

ମଧ୍ୟମ ବୟସ୍କ ଗୋପରାଜ ଦ୍ରୁମିଲ !

ପୁଅଟିଏ ଯଦି ଆଆନ୍ତା ! କି ପିପାସା ! ବଡ କଷ୍ଟପ୍ରଦ ବାତ୍ସଲ୍ୟର ତୃଷ୍ଣା !

ଯୁବତୀ ପତ୍ନୀ କଳାବତୀ ଅହରହ ଖୋଜୁଥିଲା ନିଜ ସ୍ୱାମୀଙ୍କର ଏକ ଶିଶୁ ମୂର୍ତ୍ତି ! ମାତ୍ର କାହିଁ ସେ ସୌଭାଗ୍ୟ ପୁଷ୍ପ ? ବନ୍ଧ୍ୟାର ବେଦନା କି ଜାଣିବ ପୁରୁଷ ! ନାରୀଟି କାନ୍ଦୁଥିଲା କଇଁକଇଁ !



Source: Author, Digitized by PPRACHIN, SOA

କଳାବତୀଙ୍କୁ ଦୃମିଳ ଆଶୀର୍ବାଦ କଲେ : ଯାଅ ରାଣି, ଋଷି କଶ୍ୟପଙ୍କଠୁ ଗ୍ରହଣ କର ବୀର୍ଯ୍ୟ ଭିକ୍ଷା !

କାମ ଓ କାମନା ଭିଜା ପୁତ୍ର ପ୍ରାର୍ଥିନୀ କଳାବତୀ କାଦମ୍ବରୀ ରସ ମତୁଆଲା ! ଉନ୍ନତ ବକ୍ଷ ଦେଶରୁ ତା' ବାରବାର ଖସି ପଡୁଛି ଦୂକୁଳ ! ବକ୍ଷ ବନ୍ଧନୀ ଟପି ସ୍ଫୁର୍ଦ୍ଧିତ ସ୍ୱଭାବ ପ୍ରଦର୍ଶିତ କରୁଛି ସ୍ତନଚୂଳ ! ଭୁଜଙ୍ଗିନୀ ଋଷି ତନୁର ଚନ୍ଦନ ବୃକ୍ଷରେ କି ଗୁରେଇ ହୋଇଯିବ !

କଶ୍ୟପଙ୍କ ଦୃଷ୍ଟିର ପକ୍ଷୀ ଓଁ ନାମକ ପାଦପ ଶାଖାରେ ଦୃଢ଼ ହୋଇ ବସିଛି !

ହଠାତ୍ ଆକାଶରେ ହେଲା ଏକ ଉଲ୍‌କା ଚ୍ୟୁତ ! ଗଗନରେ ଗମନ କରୁଛି ମେନକା ଦେବେନ୍ଦ୍ର ଭୋଗ୍ୟା ! ତା ତନୁପୁଷ୍ପର ବାସ୍ନା.... ଚ୍ୟୁତ, କଦମ୍ବ ଅରବିନ୍ଦ, ନବମଲ୍ଲିକା ଓ ଅଶୋକ; ସବୁ ହୋଇ ଯାଇଛି ଏକତ୍ର ! ଋଷି ଅସ୍ଥିର ! ପ୍ରଲୁବ୍ଧ ! ଏଣେ ପ୍ରତୀକ୍ଷିତା କଳାବତୀ ଜାନୁପାତି ବସି ମାଗୁଚି ସୌଭାଗ୍ୟ ! ପ୍ରଭୋ, ମତେ ପୁଅଟିଏ ଦିଅ !

ଅମଳ ଧବଳ ଜ୍ୟୋତି ବୁନ୍ଦା ବୁନ୍ଦା ତାରକା ଆସିଲା ଖସି ! ବୁନ୍ଦା ବୁନ୍ଦା ଉଷ୍ମ ମୁକ୍ତା, ଗୋଟାଗୋଟା ମଲ୍ଲୀ କଳିକା ! ଜରାୟୁର ପଲାସ ପତ୍ରରେ ସିଏ ତୋଳି ନେଲା ଏବଂ ତୋଳି ନେଲା ! ତୃଷିତ ଶୁଷ୍କ ବାଂଛିତ ବାଂଛା ତାର ଆର୍ଦ୍ର ହୋଇଗଲା !

ମରୁଭୂମି ପାଲଟୁଥିବା ଅପୁତ୍ରିକ ରାଜାର ସାମ୍ରାଜ୍ୟରେ ହଠାତ୍ କେଉଁଠୁ ଘୋଟି ଆସିଲା ସଜଳ ସୁନୀଳ ଜଳଦ ! ବର୍ଷିଗଲା ଅହରହ ! କଳାବତୀ ଜନ୍ମକଲା ଏକ ପୁଅ ! ଋଷି ଓ ବ୍ରାହ୍ମଣ କଲେ ତାକୁ ଆଶୀର୍ବାଦ ! 'ନାରଂ ଦଦୌ ଜନ୍ମକାଳେ ତେନାୟଂ ନାରଦାଭିଧଃ !'

ଅର୍ଥାତ୍ ଜନ୍ମ କାଳରେ ଜଳ (ନୀର) ପ୍ରଦାନ କରିଥିବା ହେତୁ ଏହି ପୁତ୍ର ନାରଦ !

ଶରୀର ଗୋଟିଏ ନଗର ! ସେଠି ଚାରି ପ୍ରହରୀ– ପ୍ରଜ୍ଞା, ଅସ୍ଥିସ୍ତମ୍ଭ, ଚର୍ମଦ୍ୱାର, ରକ୍ତମାଂସରେ ଚର୍ବି ଲେପିତ, ଜଳ ଜାଲ ଚତୁଃପାର୍ଶ୍ୱ ! ନବଦ୍ୱାର ! ଚୈତନ୍ୟ ପୁରୁଷ ପାଳୁଅଛି ରାଜ୍ୟ ! ମନ ଓ ବୁଦ୍ଧି ତା'ର ଦୁଇ ମନ୍ତ୍ରୀ ! ପରସ୍ପର ପରସ୍ପରର ବିରୋଧି ! ରାଜାର ଚାରି ଶତ୍ରୁ ! ରାଜାର ବିନାଶ ପାଇଁ ସର୍ବଦା ପ୍ରଯତ୍ନଶୀଳ ! ସେମାନେ କାମ, କ୍ରୋଧ, ଲୋଭ ଓ ମୋହ !

ନବଦ୍ୱାର ଯେତେବେଳେ ରହେ ଉନ୍ମୁକ୍ତ ନେତ୍ରାଦିରୁ ଆକ୍ରମଣ ରଚେ ଅନୁରାଗ ନାମକ ଶତ୍ରୁ ! ଶତ୍ରୁ ସର୍ବବ୍ୟାପୀ, ପ୍ରବଳ ଅତ୍ୟନ୍ତ ! ଲୋଭ, ମୋହ ଓ କ୍ରୋଧ ତା' ପଛରେ ଆକ୍ରମଣ ପାଇଁ ହୁଅନ୍ତି ଉଦ୍ୟତ !

ଶତ୍ରୁ ଅନୁରାଗ ମନ୍ତ୍ରୀ ମନ ଓ ବୁଦ୍ଧି ସହିତ ସଂଯୁକ୍ତ ହେବାକୁ ହୁଏ ଅଭିଳଷିତ ! ମନ ଓ ଇନ୍ଦ୍ରିୟକୁ ବଶୀଭୂତ କରି ପ୍ରଜ୍ଞା ପ୍ରହରୀ ଓ କଟୁଆଳକୁ କରନ୍ତି ମଗ୍ନ ! ବୁଦ୍ଧି ମନର ବଶୀଭୂତ


Source: Author, Digitized by PPRACHIN, SOA

ଅବସ୍ଥା ଦେଖି ହୋଇଯାଏ ନଷ୍ଟ ! ଅମାତ୍ୟ ଓ ପ୍ରଜାହୀନ ଏକେଲା ରାଜାଙ୍କୁ ଦେଖି ଶତ୍ରୁ କରେ ନିହତ ! ପ୍ରଥମେ ନାଶଯାଏ ସ୍ମୃତି ଶକ୍ତି ! ସ୍ମୃତିରୁ ବୁଦ୍ଧି ଓ ବୁଦ୍ଧିରୁ ଘଟେ ସର୍ବନାଶ ! ଧ୍ୱଂସ !

ବୁଝିବା ସହ ବିକାରଗୁଡ଼ିକର ସମ୍ପର୍କ ମଣିଷକୁ ଚଢ଼ାଏ ମୃତ୍ୟୁ ପାହାଚ ! ଜଳନ୍ଧର ମରଣଶୀଳ ପୃଥିବୀର ଜୀବଙ୍କଠୁ କି ଭିନ୍ନ ?

ବର୍ଷବର୍ଷ ଧରି ସଂସ୍କୃତି ପଢ଼େଇ ଆସିଛି : କାମବଶ ହେତୁ ରାଜା ପାଣ୍ଡୁହତ, କ୍ରୋଧବଶ ଅନୁହ୍ଲାଦ ପୁତ୍ର ବଞ୍ଚିତ ! ଲୋଭବଶରେ ରାଜା ନଷ୍ଟ, ମଦବଶ ବେଣହତ, ଅଭିମାନ ହେତୁ ଅନାୟୁର ପୁତ୍ର ମୃତ ଓ ହର୍ଷ କାରଣରୁ ପୁରଂଜୟର ମୃତ୍ୟୁ ! ତଥାପି ରକ୍ତ ମାଂସର ମଣିଷ ସେହି ରକ୍ତ ମାଂସ ଦ୍ୱାହି ଦେଇ ବିକାରଗ୍ରସ୍ତ ହୋଇଛି ! ଅତି ଲେମ୍ବୁ ଚିପୁଡ଼ିଛି !

'ତୁମକୁ ଅପବିତ୍ର ହେବାକୁ ପଡ଼ିବ ପ୍ରଭୁ ! କବଚ ଫାଟିବ ! ପାପ ତାପରୁ ପୂତ ହେବ ପୃଥିବୀ ! ସଂସାରର ସାନ୍ତ୍ୱନା ତୁମେ, ତୁମେ ଆଶାବାଡ଼ି !' ନାରଦ ଯୋଡ଼ିଥା'ନ୍ତି ପାପୁଲି !

ବୃନ୍ଦା ଭଲ ପାଇବାର କବଚରେ ସୁରକ୍ଷିତ ଜଳନ୍ଧର ଜୀବନ କୀଟ ! ଯେଉଁଦିନ ସେ ସ୍ୱେଚ୍ଛାରେ ଅନ୍ୟ କାହାକୁ ସମର୍ପିବ ତା ତନୁପୁଷ୍ପ; ସେଇଦିନ ଫାଟିବ କବଚ ! ହେମଗିରି ଗୁହାରେ ବନ୍ଦୀ ଦେବବୃନ୍ଦ ଏବଂ ସ୍ୱୟଂ ଆପଣ ଶ୍ରୀଙ୍କ ସହିତ ଜଳନ୍ଧର ପୁରରୁ ହେବେ ମୁକ୍ତ !

ସେତେବେଳେ ସମୟଟା ଥିଲା ସହଜିଆ ! ଆର୍ଯ୍ୟ ବୁନିଆଦି ସ୍ମୃତି ସ୍ଖଳନରେ ବିଭସ୍ଥ ଦିଶିଛି ! ତା' ପରଠୁ ହୋଇଛି ମୈଥୁନୀ ସୃଷ୍ଟି ! ଆଦ୍ୟରେ ସୃଷ୍ଟି ଥିଲା ଅମୈଥୁନୀ! ବୈଦିକ ସୂକ୍ତ ସୃଷ୍ଟି ପାଇଁ ବ୍ୟାକରଣର ଆବଶ୍ୟକ ନଥିଲା! ଆବଶ୍ୟକ ଥିଲା କେବଳ ଆତ୍ମାର କ୍ରନ୍ଦନ! ଆଜି କାନ୍ଦିବା ପାଇଁ ଆମ ପାଖରେ ଅଶ୍ରୁ ନାହିଁ କିଂବା ବଂଚିବା ପାଇଁ ଆମ ଭିତରେ ଆତ୍ମା କାହିଁ ??

ଉତଥ୍ୟଙ୍କ ସ୍ତ୍ରୀ ମମତା ! ବୃହସ୍ପତିଙ୍କ ଭାତୃଜାୟା; ଶିରିଷ କୋମଳା, ଜହ୍ନିଫୁଲ ପରି ଗୋରା! ସେଦିନ ସେ କିଛି ବିଳମ୍ବିତ ! ପୁରୁଷାଣ୍ଣୀଆ ନଦୀରେ ପ୍ରାତତର୍ପଣରତ ! ଦୂରରୁ ଦୂରକୁ ତାଙ୍କ କଣ୍ଠ ମଧୁରୁ ଭାସି ଯାଉଥିଲା ତର୍ପଣସୂକ୍ତ ! ଅନ୍ୟ ତୁଠରେ ସ୍ନାନରତ ଆକୃଷ୍ଟ ଯୁବକ ମନ୍ତ୍ର ମୁଗ୍ଧ ପନ୍ନଗପରି ଏ କୂଳକୁ ଆସିଲେ ମାଡ଼ି !

ଆର୍ଦ୍ର ଶୁକ୍ଳାମ୍ବର ଚର୍ମପରି ଜଡିଛି ସାରା ଅପଘନ ! ସମୃଦ୍ଧ ବକ୍ଷୋଜ ଦିଶୁଛି ଯେମିତି ନଗ୍ନ! ଭାରି ଜାନୁ ଓ ପିଚା ! ନାରୀ ନୁହେଁ, ଧାରେ ସ୍ୱର୍ଣ୍ଣଗଙ୍ଗା !



Source: Author, Digitized by PPRACHIN, SOA

ପରିଚୟ ପୂର୍ବାକାଶ ହୋଇଗଲା ସଫା ! ସିଏ ବୃହସ୍ପତି: ମାଗିଲେ ଅନୁମତି; ଗୋଟିଏ 'ହଁ'ର ଫୁଲରେ ମୋ ଇଚ୍ଛାର ଆକାଶକୁ ମହମହ କରି ଦିଅ, ଦେବୀ ? ମଧୁ ଲୁବ୍ଧ ନିର୍ବୋଧ ବୁଝେନା ଦିବା ବା ନିଶୀଥ ! ତୁମ ବାହୁର ପାଖୁଡ଼ାରେ ବନ୍ଦୀ କର ମୋତେ ! ଦିଅ ମୃତ୍ୟୁ ଗୋଟେ !

'ଏହା ଅନୁଚିତ୍ ! ଗଭୀର ଗଣ୍ଡରୁ ବିକଶିତ ପଦ୍ମ ତୋଳିବାକୁ ହେଲେ କର୍ଦ୍ଦମାକ୍ତ ହେବାର ବିପଦ ଅଛି ! ହେ ରୂପବାନ, ମୃଣାଳ କଣ୍ଟକରେ ବିଦ୍ଧ ହେବ ତୁମ ପାପୁଲିର ପଦ୍ମ ନାଗବଲ୍ଲୀ ! କଣ୍ଟକ ଦଂଶନ ଜ୍ୱାଳା ଦେବ ସାରା ଜୀବନ ଜଳିବା ପାଇଁ କଳଙ୍କର ଅସରନ୍ତି ସମୀଧ ! ତୁମେ ତ ଜଳିବନି ଏକା ଏକା; ମୁଁ ବି ପିନ୍ଧିବି କଳଙ୍କର ଟୀକା ! ଏହା ପ୍ରେମ ନୁହେଁ, ନୁହେଁ ଭଲ ପାଇବାର ଲୋହିତ ଗୋଲାପ ! କ୍ଷୁଧିତ ନିଜ ଦେହ ପାଇଁ ମୋତେ ତୁମେ ମାଗନା !'

ଯୁକ୍ତି ଜାଲରେ ବିଦୁଷୀ ମମତାଙ୍କୁ ଆକର୍ଷି ଆଶ୍ଳେଷି ନେବାକୁ ପ୍ରସାରିତ କଲେ ହସ୍ତ ବୃହସ୍ପତି !

'ତୁମେ ମୋତେ ବାଧ୍ୟ କରୁଛ, ଏହା ବଳାତ୍କାର !'

'ଘଟିଯିବା ପରେ ହୁଏତ ଏହା ହେବ ବଳାତ୍କାର; ଯଦି ତୁମେ ଚାହଁ ଏହା ନଘଟୁ !'

ସିଦ୍ଧାନ୍ତ ସ୍ଥିର ପୂର୍ବରୁ ନୀବିବନ୍ଧ ତୁଟିଯାଇ ସିକ୍ତବାସ ଖସି ଯାଇଥିଲା କଟିରୁ ଓ କୁଚବୃନ୍ତରୁ ନିମ୍ନକୁ ! ଅଭିଷେକ ପୂର୍ବରୁ ନବନୀତ, ଭାଙ୍ଗ, ମଧୁ ଓ ରମ୍ଭାରେ ବୃହସ୍ପତି ମର୍ଦ୍ଦିତ କଲେ ଶମ୍ଭୁଙ୍କୁ !

ଶକ୍ତି ସାରା ବିଛେଇ ହୋଇ ପଡ଼ିଲା ତଟକା ଦୁଗ୍ଧର ଠୋପା !

ଦୁଇଚକ୍ଷୁ ବନ୍ଦ କରି ଦେଲେ ମମତା !

ଚିହ୍ନା ଦେହର ପୁରୁଣା ସ୍ପର୍ଶଠୁ ଅଚିହ୍ନା ଦେହର ଏ ସ୍ପର୍ଶ କି ସ୍ୱାଦିଷ୍ଟ ! ହାଏ, ମୁଁ ବୃଥା ବାରଣ କରୁଥିଲି ସିନା ! ତାଙ୍କ ଚୁମ୍ବନରେ ଚହଟୁଛି କଦମ୍ବ ଫୁଲର ବାସ୍ନା ! କୁଚାଘାତରେ କୁରୁବକ ବିକଶି ଉଠୁଛି ! ହିମାଦ୍ରିପରି ଶୀତଳ ଶୁଭ୍ର ସ୍ତନ ଯୁଗଳ ମୃଦୁ ମର୍ଦ୍ଦି ଦେଲା ବେଳେ ମନର ବଖରା ସାରା ଭରି ଯାଉଚି ତୁହାକୁ ତୁହା ସଦ୍ୟଫୁଟା କୋରୁହାଁ ଫୁଲର ବାସ୍ନା ! ସ୍ପର୍ଶରେ ପ୍ରିୟଙ୍ଗୁ, ବକ୍ତ୍ରାବାତରୁ ଭାସି ଆସୁଛି ମୁକୁଳିତ ଚ୍ୟୁତର ସୌରଭ ! ସୁକେଶୀ ମମତାଙ୍କ ମୁକ୍ତ ଦୀର୍ଘ ନୀଳ ଚିକ୍କଣ ଚିକୁର ପାପୁଲିରେ ଆଉଁସି ଆଣିଲେ ସେ ! କୁସୁମ୍ଭ ବିକଶିତ ହେଲା !



Source: Author, Digitized by PPRACHIN, SOA

କୋଳଦାନରେ କୁରୁଣ୍ଟକ; ରତିରେ ଫୁଟିଲା ଅଶୋକ !

ଘୃତପୂର୍ଣ୍ଣ ଦୀର୍ଘଶ୍ରୁବ ନାଭିରୁ ନାଡ଼ ଦେଇ ଯୋନିବାଟେ ପଦ୍ମ ପର୍ଯ୍ୟନ୍ତ ହବନ ପାଇଁ ଲମ୍ବିଗଲା ବେଳେ କେହି ତାଙ୍କ ପଥ ରୁଦ୍ଧ କଲା ! କିଏ ? ଜଳସିକ୍ତ ଦୁଇଟି ପଦ୍ମର ଛନ୍ଦ ! ଗୋଷ୍ପଦ ପୁଷ୍ପର ଭିତରେ ଭାସୁଛି ଏକ ଶିଶୁପାଦ !

'ଅନ୍ଧ ଶିଶୁ, ଦ୍ୱାର ଖୋଲ !'

ବେଦ ଶିକ୍ଷାରତ ଗର୍ଭସ୍ଥ ଭ୍ରୂଣ ଅନ୍ଧ ହୋଇ ଖସି ପଡ଼ିଲା ତଳେ ! ସିଏ ଦୀର୍ଘତମା; ଗୌତମ ଗୋତ୍ର, ପତ୍ନୀ ତାଙ୍କ ପାଷାଣୀ ଅହଲ୍ୟା !

ଥରେ ଗୌତମଙ୍କ ଅନୁପସ୍ଥିତିରେ ରୂପସୀ ଋଷିପତ୍ନୀଙ୍କୁ ଇନ୍ଦ୍ର ଋଷିଙ୍କ ଛଦ୍ମ ରୂପରେ ବସନ୍ତ ଋତୁର ପୁଷ୍ପପରି ସାଉଁଟି ଧରିଲେ ! ବର୍ଷାର ସଘନ ଠୋପାରେ ତିନ୍ତିଗଲା ଉଭୟଙ୍କ କୋଳ, କପାଳ ଓ କପୋଳ ଇମିତି ଅନେକ କାଳ ! ତପସ୍ୟାରୁ ଫେରି ଋଷି ହେଲେ ଅବଜ୍ଞାତ ! ଜ୍ଞାତ ହେଲେ ଇନ୍ଦ୍ରଙ୍କ କୁତ୍ସିତ କୌଶଳ ! ଦେଲେ ଅଭିଶାପ ! ଇନ୍ଦ୍ରଙ୍କ ସାରା ଦେହ ଭରିଗଲା ସହସ୍ର ଉପଦଂଶ ଓ ଅହଲ୍ୟା ହେଲେ ପାଷାଣୀ !

ଆଉ ବୃହସ୍ପତି ? ସେ ଏକମାତ୍ର ଦେବ ଔଷଧବିତ୍ ! ଦେବାସୁର ସଂଗ୍ରାମ ସମୟ ! ଆଉ ଜଣେ ଚିକିତ୍ସା ଶାସ୍ତ୍ର ତାଙ୍କଠୁ ତାଲିମ ନେବା ପାଇଁ ଦେବସଭା ନେଲା ନିର୍ଣ୍ଣୟ ! ସିଏ ଚନ୍ଦ୍ର ! ଯଥା ମୁହୂର୍ତ୍ତରେ ହେଲା ତାଙ୍କ ଉପନୟନ ! ତପ୍ତ ପୃଥିବୀ ବାରି ଧାରାକୁ ଯେମିତି ଶୋଷିନିଏ ଠିକ୍ ସେମିତି ବୃହସ୍ପତିଙ୍କଠୁ ଶୋଷିନେଲେ ଔଷଧ ଶାସ୍ତ୍ର ! ବୃହସ୍ପତିଙ୍କ ସେ ମୁଖ୍ୟ ଶିଷ୍ୟ ! ବୃହସ୍ପତି ପତ୍ନୀ ଜୁହୁଙ୍କଠୁ ଗୁରୁକୁଳାଶ୍ରମରେ ଚନ୍ଦ୍ରଙ୍କ କ୍ଷମତା ଓ ଦକ୍ଷତା ହେଲା ବୃଦ୍ଧି ! ଈର୍ଷିତା ଜୁହୁ ଚନ୍ଦ୍ରଙ୍କୁ ଅପମାନିତ କରିବା ପାଇଁ ଦିନେ ବୃହସ୍ପତିଙ୍କ ଅନୁପସ୍ଥିତିରେ ବାର୍ତ୍ତା ଦେଲେ ସମୀଧ ତାଙ୍କ କୁଟୀରରେ ଚନ୍ଦ୍ରଙ୍କୁ ପହଞ୍ଚାଇବାକୁ ହେବ ! ସମୀଧ ଭାର ବହନ କରି ଆସିଲେ ଚନ୍ଦ୍ର !

'ଅପୂର୍ବ କମନୀୟ କାନ୍ତି, ଶାନ୍ତ ସୁଶୀତଳ ଯୁବକ ଶିଷ୍ୟ, ଏଇ କଣ ଚନ୍ଦ୍ର; ଏତେ ରୂପବନ୍ତ !!'

'ଏଇ ତେବେ ଗୁରୁପତ୍ନୀ ! ଷୋଡ଼ଶୀ; ନୀଳନୀଳ ଡୋଳାରେ ତାଙ୍କର କି ସୌନ୍ଦର୍ଯ୍ୟର ପ୍ରଶ୍ନବାଚୀ !'

ବିନୀତ ଛାତ୍ର ନିବେଦନ କଲା ସମୀଧ ! ଚନ୍ଦ୍ରକରର ଶୀତଳ ସ୍ପର୍ଶରେ ଶିହରି ଉଠିଲେ ଜୁହୁ ! ଫିକ୍‌କିନା ଈଷତ୍ ହାସ୍ୟର ଝଲକଟିଏ ସେ ଚନ୍ଦ୍ରଙ୍କୁ ଉପହାର ଦେଇ କରି ନେଲେ



Source: Author, Digitized by PPRACHIN, SOA

କ୍ରୀତ ! ଆଉ ନିଜେ ଚିନ୍ତାର କଡ଼େଇରେ ସନ୍ତୁଳି ପକାଇଲେ ନିଜକୁ !

"ଚନ୍ଦ୍ର, ହାୟ ତମେ କି କମନୀୟ ! କେମିତି ହେଲ ଏତେ ସୁନ୍ଦର ? ତମ ସ୍ପର୍ଶ ପୁଷ୍ପଠୁ ବି କୋମଳ!

ବଂନ୍ଦୀ ପତଙ୍ଗ !

ଗୋଟିଏ ମୁହଁର ଝୁଲନ୍ତା ଫୁଲ ଓ ଫିକ୍କିନା ଧାରେ ହସ ଚନ୍ଦ୍ରକୁ ସବୁବେଳେ କଲା ଅସ୍ତବ୍ୟସ୍ତ !

'ଗୁରୁପତ୍ନୀ ! ତମେ ପର୍ବତାଗ୍ରରେ ଭାସମାନ ଖଣ୍ଡେ ମେଘର ଧବଳ ଉତ୍ତରୀୟ; ମୁଁ ପୃଥିବୀର ନଗ୍ନ ମଣିଷ ଜଣେ ! ତମେ ରାଜଜେମା, ମୁଁ ତୀର୍ଥାଚାରୀ ସନ୍ୟାସୀର ଅବୋଲକରା ! ତମେ ଦୂରନ୍ତ ଆକାଶର ତାରାମାଳା, ମୁଁ ପୃଥିବୀସ୍ଥ କୌଣସି କୋଣର ଅନ୍ଧାର କିଛିଟା ! କେହି ଆମେ ପାଇବାନି କାହାରିକୁ ଏଠି ? ଏହା ଏକ ଅଭିଶପ୍ତ ଭୂମି !'

ସେଦିନ ବସନ୍ତ ପଞ୍ଚମୀ ! ଅନୁପସ୍ଥିତ ଗୁରୁ ! କୁଟୀରରେ ଗୁରୁପତ୍ନୀ ଏକାକିନୀ ! ସମ୍ବାଦ ଆସିଲା ସେ ଅସୁସ୍ଥା ! ଚନ୍ଦ୍ର କରନ୍ତୁ ତାଙ୍କ ଚିକିତ୍ସା ବ୍ୟବସ୍ଥା !

'ଚନ୍ଦ୍ର, ତମେ ଓଷଧିଶ ! ମୁଁ ଅସୁସ୍ଥ, ମତେ କିଛି ଔଷଧ ଦିଅ !'

'ରୋଗର ଲକ୍ଷଣ.... ଦେବୀ ?'

'ମୋତେ ଆଲିଙ୍ଗନ କର ! କୋଳାଗ୍ରତ କର ଚନ୍ଦ୍ର ! ମୁଁ ଭୁଜଙ୍ଗିନୀ ତମକୁ ଦଂଶିଯିବି, ତମଠୁ ଶୋଷି ନେବି ତୃପ୍ତି ମହୋଷଧି ! ମୋ କବରୀ ଖୋଲି ଦିଅ ! ଖୋଲିଦିଅ....'

ଦୃଢ ସ୍ତମ୍ଭ କାଣ୍ଡରେ ସବୁଜ ଲତା ଗୁରେଇ ହୋଇଗଲା !

ପାହାଡ଼ ଚୂଡ଼ାକୁ ଉଠାଉଥିବା ପଥର ବାରମ୍ବାର ଗଡ଼ି ଆସୁଥିଲା ତଳକୁ !

ଦେହର ଫୁଲଶେଯରେ ବ୍ୟାପିଛି ରତିର ରାତ୍ରୀ ! ନବେ ଡିଗ୍ରୀରେ ଏକ ସରଳ ରେଖା କୋଣକୁ କରୁଛି ଦୁଇଖଣ୍ଡ ! 'ଆଃ, ରାଣୀ ମୋର !'

'ସକାଳ ଆସୁଛି !'

'ହଁ, ଏଇ-'

'ଆଃ, ଆସିଗଲା, ଆ-ସି-ଗ-ଲା.... !' ସକାଳ ପର୍ଯ୍ୟନ୍ତ ଦୀପପରି ଦୁହେଁ ଜଳିଲେ ଖୁବ୍ ! ତୃଷ୍ଣା ଅସରନ୍ତି ! ପୁଞ୍ଜିଭୂତ କାମର କାମନା ତାଙ୍କ ଆକାଶପରି ଅସୀମ ! ଦୁହିଁଙ୍କ



Source: Author, Digitized by PPRACHIN, SOA

ମିଳିତ ଶିଖାରୁ ସୃଷ୍ଟି ହେଲା ବହଳ କଳା ! ଆସ୍ତରଣ ବାନ୍ଧିଲା ଜମାଟ ! ଜୁହୁ ପ୍ରସବ କଲେ ଏକ ପୁତ୍ର !

ସ୍ୱୟଂଭୂବ ମନୁଙ୍କ ପୁତ୍ର ଅତ୍ରି ଓ ଅଙ୍ଗିରା ! ଅତ୍ରି ଜ୍ୟେଷ୍ଠ, ଅଙ୍ଗିରା କନିଷ୍ଠ ! ଚନ୍ଦ୍ର ଅତ୍ରି ପୁତ୍ର ! ବୃହସ୍ପତି ଅଙ୍ଗିରାଙ୍କ ସୁତ ! ଭାତୃଜାୟା ଜୁହୁଙ୍କୁ ହରିନେଲେ ଚନ୍ଦ୍ର !

କ୍ରୋଧିତ ବୃହସ୍ପତିଙ୍କ ଖଡ୍‌ଗାଘାତରେ ଦିନେ ଚନ୍ଦ୍ରଲୋକ ଖଣ୍ଡଖଣ୍ଡ ହୋଇ ପଡ଼ିଲା ଛିଣ୍ଡି ! ଚନ୍ଦ୍ର ଶୁକ୍ରଙ୍କ ନେଲେ ସହାୟତା ! ବୃହସ୍ପତି ନିଜ ପିତୃ ଶିଷ୍ୟ ରୁଦ୍ରଙ୍କୁ ନିବେଦନ କଲେ ସହାୟତା ! ବଜ୍ରହସ୍ତ ଇନ୍ଦ୍ର ଅସୁର ସୈନ୍ୟଙ୍କ କଲେ ପ୍ରତିରୋଧ ! ନାରୀ ପାଇଁ ବୋଧ ହୁଏ ଏହି ଥିଲା ଆଦି ମହାଯୁଦ୍ଧ ! ଶେଷରେ ମଧ୍ୟସ୍ଥତା କଲେ ଚୌମଥା ! ଚନ୍ଦ୍ର ପ୍ରାପ୍ତ ହେଲେ ପୁତ୍ର ! ଜୁହୁଙ୍କୁ ପ୍ରଦାନ କଲେ ବୃହସ୍ପତିଙ୍କୁ !

ବଳବାନ ରାଜାର ରାଜ୍ୟପରି ତାଙ୍କର ସତୀତ୍ୱ ଥିଲା ସୁରକ୍ଷିତ ! ଦେବଗଣ ଦେଲେ ତାଙ୍କୁ ଶପଥ ! 'ତସ୍ମା ଏଷା ତଥା ରାଷ୍ଟ୍ରଂ ଗୁପିତଂ କ୍ଷତ୍ରିୟସ୍ୟ.... !'

ବଳବାନ୍ ରାଜାର ରାଜ୍ୟ ଯେପରି ରକ୍ଷିତ ସେହିପରି ତୁମ ସତୀତ୍ୱ ବି ରହିଛି ସୁରକ୍ଷିତ !

'ପୌଶ୍ଚଲ୍ୟାଚ୍ଚଳ ଚିତ୍ତା ବୈ ନ ସ୍ନେହାଚ୍ଚ ସ୍ୱଭାବତଃ' ନାରୀ ମାତ୍ରକେ ହିଁ ସ୍ୱଭାବରେ ପୁଂଶ୍ଚଳୀ (ପ୍ରୀତିଇଚ୍ଛୁକା), ଚଞ୍ଚଳ ଚିତ୍ତଯୁକ୍ତା ତଥା ସ୍ନେହଶୀଳା ! ଗଡ଼ ଯେମିତି ଗଡ଼ ଖାଇ ଓ ପ୍ରାଚୀର ପରିବେଷ୍ଟିତ ହୋଇ ରକ୍ଷିତ ହୁଏ, ନାରୀ ସେହିପରି ପରିବାର ଓ ସମାଜ ବନ୍ଧନରେ ଥାଏ ସୁରକ୍ଷିତା ଏବଂ ନିୟନ୍ତ୍ରିତା !

ବିଷ୍ଣୁଗର୍ଭ ନାମକ ସତ୍ୟଯୁଗ ! ସାର ନାମକ ବୈକୁଣ୍ଠ !

ଅଣାକାର ପୁରୁଷଙ୍କ ଦର୍ଶନ ପ୍ରତୀକ୍ଷିତ ବ୍ରହ୍ମା ! ଯୁଗ ପରେ ଯୁଗ ଇମିତି ନବଯୁଗ ! ଅତି ବିଳମ୍ବ ଅସହ୍ୟ; ବିମର୍ଷ ସେ, ପ୍ରତ୍ୟାବର୍ତ୍ତନ କଲେ ଶ୍ୱେତପର୍ବତ ! ହେଲେ ଧ୍ୟାନସ୍ଥ ! ସୁଷମ୍ନା ସହସ୍ରାର ପଦ୍ମଦଳ ଉପରେ ରଚିଲା ଲାସ୍ୟ ! ସେ ନା ଜାଗ୍ରତ ନା ମୃତ ! ବିଗତ ହେଲା ସତଷଠି ଯୁଗ !

ଶ୍ରୀଙ୍କ ପାର୍ଶ୍ୱଚାରିଣୀ ଚାରି ଚତୁରୀ ବାଳୀଙ୍କୁ ବ୍ରହ୍ମାଙ୍କ ନିକଟକୁ ପ୍ରେରଣ କଲେ ଶ୍ରୀହରି ! ଚାରିମୁଖ ସାମ୍ନାରେ ସପ୍ତସ୍ୱରୀ ବୀପଞ୍ଚି ଓ ମଧୁକଣ୍ଠୀ ଯୁବତୀଙ୍କ କାମୋଦୀ ବ୍ରହ୍ମାଙ୍କ ଧ୍ୟାନଧନୁ କଲା ଭଗ୍ନ !

'ସମବୟସୀ ପଦ୍ମଗନ୍ଧା ପଦ୍ମାକ୍ଷୀ ଚାରୁ ଜଘନାମାନେ, ତୁମେ ରସବତୀ ଓ ରତିବତୀ; ମୋ ପାଖକୁ ଆସ !'



Source: Author, Digitized by PPRACHIN, SOA

ମତକାଶିନୀ ଲଳନା ଲୀଳାୟିତ ଭ୍ରୂଭଙ୍ଗୀରେ ହାଣିଲେ ଅପାଙ୍ଗ ! ଝରଣାର ଧ୍ୱନିପରି ଉଠିଲା ହସର ଲହର ! ଲୀଳାୟିତ ସ୍ଥଳ ପଦ୍ମପରି ମୁଖ ଓ କଦମ୍ବପରି ମସୃଣ ବକ୍ଷୋଜମାନ ସ୍ପନ୍ଦିତ କଲା ବ୍ରହ୍ମାଙ୍କ ଅମୋହରେତ ! ଥାକ ଥାକ ନିଶ୍ୱାସ ପରି ବ୍ରହ୍ମଚର୍ଯ୍ୟ ଆସିଲା ନିଗିଡ଼ି ! ବାୟୁ ସ୍ପର୍ଶରେ ନେଲା ରୂପ, ଚାରିଗୋଟି ପୁତ୍ର ! ସନକ, ସନନ୍ଦ, ସନାତନ ଓ କନିଷ୍ଠ ମନୁ ! ବ୍ରହ୍ମା ଯେତିକି ହେଲେ ଲଜ୍ଜିତ ସେତିକି ବି ପ୍ରୀତ ! ଚାରି ଲୀଳାବତୀଙ୍କୁ ଦେଲେ ଶାପ ! ନୀଳମେଘ ବ୍ୟାପିଗଲା ଯେମିତି ସମଗ୍ର ସୁନେଲୀ ଆକାଶ !

'ହେ ଅଲକ୍ଷଣୀମାନେ, ସ୍ଖଳିତ କଲ ମୋ ଅମୋହରେତ ଅଥଚ କଲନି ଗ୍ରହଣ ! ତେଣୁ ତୁମ୍ଭଙ୍କୁ ତ୍ରିଭୁବନରେ କେହି ନକରୁ ଗ୍ରହଣ ! ନିସ୍ଫଳ ହେଉ ତୁମ ପୁଲକଭର୍ତ୍ତି ଲୋଭନୀୟ ଯୌବନ ! ବ୍ୟର୍ଥ ହେଉ ଚାରୁଚନ୍ଦ୍ରାତପପରି କମନୀୟ ତୁମ କାୟାର ପ୍ରସୂନ ! ତୁମେ ଅଗ୍ରହଣୀୟା ହୋଇ ରୁହ !

ଭଗ୍ନ ସ୍ତମ୍ଭପରି ମୂର୍ଚ୍ଛିତା ନାରୀ ମୂର୍ତ୍ତି ଟଳି ପଡ଼ିଲେ ତାଙ୍କ ପଦ୍ମପାଦ ତଳେ ! ପବନରେ ଭରି ଗଲା ଲଳନା ଲଳିତକଣ୍ଠର କାରୁଣ୍ୟ, ତୀର୍ଯ୍ୟକ ମୂକ ହୋଇଗଲେ ! ବୃକ୍ଷଲତା ସ୍ଥାଣୁ ପାଲଟିଲେ ! ପ୍ରବଳ ଶୋକୋଚ୍ଛ୍ୱାସରେ ଆକାଶ ହୋଇଗଲା ଦୀର୍ଣ୍ଣ ଓ ବିଦୀର୍ଣ୍ଣ ! ସେମାନଙ୍କ ମୋକ୍ଷ-ଔଷଧ ତିଆରିଲେ ବ୍ରହ୍ମା !

'ପୁରୁଷଙ୍କୁ ସୁରତି ପ୍ରଦାନ କଲେ ତୁମ ଅଙ୍ଗ ହେବ ମୋକ୍ଷ ! ପ୍ରତ୍ୟେକ ପତି ପୁରୁଷ ଦ୍ୱାରା ହେବେ ମୈଥୁନିତ ! ତହିଁରେ ହିଁ ହେବ ତୁମର ମୁକ୍ତି ! ବ୍ରହ୍ମାନନ୍ଦ ସହୋଦର ହେବ ଏଇ ସଂସର୍ଗଜ ତୃପ୍ତି !'

ଏଇଠୁ ହେଲା ମୈଥୁନିତ ସୃଷ୍ଟିର ପ୍ରାରମ୍ଭ ! ଜୀବଜନ୍ମ ଓ ବିବର୍ତ୍ତନ !

ପ୍ରତ୍ୟେକ କାର୍ଯ୍ୟର ରହିଛି ଗୋଟିଏ ସୀମା ! ସୀମାର ପ୍ରାଚୀରଟି ଭାଙ୍ଗି ଦେଲେ କର୍ମ ହୁଡ଼ିଯାଏ ତା'ର ସଂଜ୍ଞା !

'ମହର୍ଷି, ନାହିଁ କ'ଣ ମୋ ସାମ୍ରାଜ୍ୟରେ କହିଲେନି ତ !' ପ୍ରଶ୍ନକଲା ଜଳନ୍ଧର !

'ସବୁ ଅଛି ମହାବଳୀ, ନାହିଁ.... କାହିଁ ଦେଖିଲିନି ତ ତୋ ଅନ୍ତପୁରେ ସେପରି ଜଣେ ସୁନ୍ଦରୀ ନାରୀ ! ଗିରି କନ୍ୟା ହରପ୍ରିୟା ଉମାପରି ଅନନ୍ୟା ଜଣେ ରୂପସୀ !'

'ଉମା; କ'ଣ ବୃନ୍ଦାଠୁ, ମୋ ଭଗ୍ନୀ କମଳାଠୁ ବି; ଏତେ ମନୋରମା ?'

କୈଳାସକୁ ଜଳନ୍ଧର ଦୂତ ଘେନିଗଲା ପତ୍ର !



Source: Author, Digitized by PPRACHIN, SOA

ଦୂତର ଉଦ୍ଧତ ଶିର ଶାଣିତ ତ୍ରିଶୂଳ କଲା ଛିନ୍ନ !

ଜଳନ୍ଧର କୈଳାସ କଲା ଆକ୍ରମଣ ! ଆକାଶ ଦିଶିଲା ମେଘାଚ୍ଛନ୍ନ ! ଅଣଚାଶ ପବନ ବହିଲା ! ବୃକ୍ଷସବୁ ଗୋଟି ଗୋଟି ହେଲେ ଧରାଶାୟୀ !

'ମୁଁ ଚିନ୍ତିତ କେଶବ ! ମନବନ ଜାଳୁଛି କା ହାତର ନିଆଁ ! ମୁଁ କାରଣ ଅଜ୍ଞାତ !'

'ଦେବୀ, ତୁମକୁ ଧାରଣ କରି ପୃଥିବୀ ଧନ୍ୟା ହୋଇଛି ! ଅଥଚ ତୁମେ..... !'

'ଆବାଲ୍ୟରୁ ସବୁ ତ ଦେଇଚି ! ଆଉ କ'ଣ ମୋ ପାଖରେ ଅଛି ଯାହା ନେବା ପାଇଁ ସମୁଦ୍ରପରି ମୋ ମନକୁ ମନ୍ଥୁଛ ! ହେ ଅନ୍ତର୍ଯ୍ୟାମୀ, ତୁମେ ବଡ଼ ମାୟାବୀ !'

'ସଖା ଜଳନ୍ଧରଙ୍କ ଯୁଦ୍ଧଯାତ୍ରା ତୁମ ଖେଦର ହେତୁ ବୃନ୍ଦା ! ଧୈର୍ଯ୍ୟଧର, ଆସନ୍ତା କାଲି ସୂର୍ଯ୍ୟାସ୍ତ ପୂର୍ବରୁ ଲେଉଟିବେ ମହାବଳୀ !'

ବିଳପିତା ନାରୀ ମନ ବୁଝୁ ନାହିଁ କିଛି ! ଦିନ ନାହିଁ, ରାତି ନାହିଁ, ଶାନ୍ତି ନାହିଁ !

ସବୁ ନଈ ପାଣି ଏକା ! ନଈକୁ ଯିବେ ! ତୁମ ନଈ ଗଙ୍ଗା ! ତୁମ ତୃଷା ସିଏ ମେଣ୍ଟାଇ ଦେବ ! ତୁମ ବଡ଼ବାଗ୍ନିକୁ ଏଇ ଦାସୀ ବର୍ଷାର ମୂଷଳ ଧାରାରେ ଲିଭାଇ ଦେବ ! ନାରୀ ନଦୀ ! ସମୁଦ୍ର ଯା' ଗତି! ହେ ସମୁଦ୍ର, ଏ ନଦୀ ଯେ ତୁମର ! ସବୁ ଦିନେ ତୁମର ! ହେ ଦେବତା, ତୃଟି ନକର!

ଦୂର ଗଗନରେ ଦୃଷ୍ଟିଗୋଚର ହେଉଚି ଅଶ୍ୱଖୁରା ଧୂଳି ! ଫେରୁଛନ୍ତି ବୋଧେ ମହାବଳୀ ! ସମ୍ବାଦ ଦେଇଗଲା ମୁଦୁସୁଲି ! ସତ୍କାର ଦ୍ରବ୍ୟମାନ ସଜ୍ଜିତ କରିବାକୁ ବୃନ୍ଦା ଦାସୀମାନଙ୍କୁ ବାଣ୍ଟିଦେଲେ ଆଦେଶ !

ସିଂହଦ୍ୱାର ଟପି ଜୟଘୋଷ ମଣ୍ଡିତ ମହାବଳୀ ସ୍ୱର୍ଣ୍ଣ ସ୍ୟନ୍ଦନ ଠିଆ ହେଲା ମହଲ ସାମ୍ନାରେ !

କନକ କଳସ ଭର୍ତ୍ତି ସୁଗନ୍ଧ ସଲିଳ ସଖୀ ଟେକି ଦେଲା ବୃନ୍ଦାଙ୍କ ହସ୍ତକୁ ! ବୃନ୍ଦା କ୍ଷାଳିତ କଲେ ପତି ପଦ ପଙ୍କଜ ଓ ସୁବର୍ଣ୍ଣ କାନିରେ ଦେଲେ ପୋଛି ! ମହାବଳୀ ସମ୍ମାନର ସହିତ ଦେବୀଙ୍କୁ ନେଲେ ବକ୍ଷ ପାର୍ଶ୍ୱେ ଟେକି !

କୃଷ୍ଣ ରାତ୍ରୀ ବେଳକୁ ବେଳ କୃଷ୍ଣତରରୁ ହେଉଥାଏ କୃଷ୍ଣତମ ! ଗଭୀରରୁ ଗଭୀରତର, ସେଦିନ କେଜାଣି କାହିଁକି !

ପୁଲକ କମ୍ପିତା ବ୍ରୀଡ଼ାବତୀ କ୍ଷୀଣାଙ୍ଗୀ ତଡିତ୍ ମଝି ନିଶୀଥରେ ଗୁରେଇ ହୋଇଗଲା ନୀଳ ମେଘରେ ! କରର ହଳେ ନୀଳପଦ୍ମ ଅଭିଷେକ କଲା ତା' ବକ୍ଷୋଜ ସ୍ୱୟମ୍ଭୁ ! ରଚିଗଲା ଚନ୍ଦ୍ରଚୂଡ଼ ! ଗୋଟିଏ ନୀଳ ମୁହଁର ଲାଲ ଓଠ ଚନ୍ଦ୍ରମାରୁ ଶୋଷୁଥିଲା ପୀୟୂଷ !



Source: Author, Digitized by PPRACHIN, SOA

ଗଜଦନ୍ତ ଖଚିତ ରତ୍ନ ପର୍ଯ୍ୟଙ୍କରେ ଶାୟିତା ଚନ୍ଦ୍ରମାଙ୍କୁ କବଳିତ କରିଥିଲା ବୃହତ୍ ମେଘଖଣ୍ଡ ! ବୃନ୍ଦା ସ୍ୱପ୍ନାଛନ୍ନ !

'କିଏ ? କିଏ ? କାହାର ଏ ସ୍ୱର ?'

ଦୋଦଚିହ୍ନା ! ଅନ୍ତରାତ୍ମା କହୁଅଛି କଥା ? ଶୀତଳ ଅମୃତବୋଳା ! ପୁଣି ଚକ୍ଷୁବନ୍ଦ ହୋଇଗଲା !

ବନପୁଷ୍ପ ମାଳାବୃତ୍ତ, କସ୍ତୁରୀ, କୁଙ୍କୁମ, ଚନ୍ଦନ ଓ ସିନ୍ଦୂର ଲେପିତ ଅପୂର୍ବ ସେ ତନୁ ସ୍ପର୍ଶ, ମନ୍ତ୍ରପରି ମୁକ୍ତ କରି ଦେଉଚି ଦେହରୁ ଆତ୍ମାର କପୋତ ! ପାଗେଳୀପରି ଅନାବୃତ୍ତ କରିଦେଲା ଗବାକ୍ଷ ! ଉଷାର ପ୍ରଥମ ଆଲୋକ ଛିଟା ଛୁଇଁଲା ସେ ମୁଖପଦ୍ମର ବେଢ଼ା !

'ହେ ପାଷାଣ, ତୁମେ ଏ କ'ଣ କଲ ? ତୁମର ହୋଇ ରହିବାକୁ ମୋତେ ଆଉ ଦେଲ ନାହିଁ ?'

'ଦେବୀ ତୁମ ବାକ୍ୟ ହେଉ ସୁରକ୍ଷିତ ! ମୁଁ ପାଷାଣ ହେବି ! ସବୁ ଯୁଗରେ ମୋ ସ୍ପର୍ଶରେ ହେବ ତୁମରି ପ୍ରତିଷ୍ଠା ! ତୁମେ ପବିତ୍ରା ଥିବ ! ଶିଳା ଶାଳଗ୍ରାମ ହୋଇ ତୁମକୁ ମୁଁ ମୁଣ୍ଡରେ ବୋହିବି ! ଚୌତରାଟିଏ ହୋଇ ଯୁଗେ ଯୁଗେ ମୁଁ ମୁଣ୍ଡାଇଥିବି ତୁମ ପବିତ୍ର ସତୀତ୍ୱର ପ୍ରଣୟ ପାଦପ ! ତୁମେ ମୋତେ କ୍ଷମା କର ସଖି !'

ଆକାଶରେ ଚିକ୍‌ଚିକ୍ କରୁଥିଲା ରୁଦ୍ର ତ୍ରିଶୂଳର ତୀକ୍ଷ୍ଣଧାର ! ବୃନ୍ଦା ଯାଇଥିଲେ ମୂର୍ଚ୍ଛା ! ଶ୍ରୀ ତାଙ୍କୁ କୋଳରେ ଧରି କରୁଥିଲେ ସେବା ! ସାମ୍ନାରେ ହରି ! ସେଇ ଏକବର୍ଣ୍ଣ, ଏକା ଆଖି, ଏକ ଦୃଷ୍ଟି, ପ୍ରଶସ୍ତ କପାଳ ! ବୀର ଦୀପ୍ତ ଉଜ୍ଜ୍ୱଳ ବଦନ ! କିନ୍ତୁ ପରିହିତ ପୀତପାଟ ! କସ୍ତୁରୀ, ଗୋରଚନା, କୁଙ୍କୁମ, ଚନ୍ଦନ ଅଗୁରୁ ଚର୍ଚ୍ଚିତ.... !

ଦୁଇ ଓଷ୍ଠର ରକ୍ତ ପଲ୍ଲବ ହେଲା ଆନ୍ଦୋଳିତ !

ବୈଧବ୍ୟଦଗ୍ଧା ଶ୍ରୀହୀନା ! ମାତ୍ର ସେ ଯେ ସ୍ୱୟଂ ଶ୍ରୀଙ୍କ କୋଳ ଶାୟିତା ଶ୍ରୀଯୁକ୍ତା ! ତମେ ସନ୍ଦେହୀ ପୁରୁଷ ! ସବୁ ଯୁଗେ ତୁମ ପତ୍ନୀମାନେ ହେବେ ମୋପରି ଅଗ୍ନି ପରୀକ୍ଷିତ ! ହେ ପାଷାଣ.... !'

ଅବିଚ୍ଛିନ୍ନ ତା ଶୋକର ଧାରା ସମୟ ପରି ବୋହି ଯାଉଥିଲା ! ସିଏ ନାରୀ- ତ୍ୟାଗର ମୂର୍ତ୍ତି ! ସୃଷ୍ଟିର ଦଧୀଚି ! ପୁରୁଷ ଯୁଗେ ଯୁଗେ ତାକୁ ମୁଣ୍ଡେଇ ବସିଛି !

ଯୁବତୀ ସଂସ୍କୃତି ସ୍ୱପ୍ନ ଦେଖୁଛି : ଇତିହାସ ଜରାୟୁସ୍ଥ ହେବା ପୂର୍ବରୁ ନାରୀର ସ୍ଥିତି !


Source: Author, Digitized by PPRACHIN, SOA

ତା ସତୀତ୍ୱର ସଂଜ୍ଞା କ'ଣ ସୀମିତ ସେକ୍ସଠି ?

କାର୍ଲ ତାକୁ ଠକି ଦେଇଚି? ଦାସୀପରି ସାରା ଜୀବନ ସେ ହୋଇଥାନ୍ତା ତା' ସେକ୍ସ ମେସିନ? ..... ସିଏ ଠିକିଛି ? ଠିକିଛି ?

ସତରେ ଝିଅମାନେ କ'ଣ ଶ୍ରୀମନ୍ଦିରର ଡାଲି ? ଚାଖି ଦେଲେ ଅଇଁଠା ହୁଅନ୍ତିନି ?

ସଂସ୍କୃତି ଚୁପିଚୁପି କାନ୍ଦୁଛି ଯେମିତି ଗୋଟିଏ ଗଭୀର ଶୁନ୍‌ଶାନ୍ ରାତ୍ରୀ ନିଜ ପାଟିରେ ଲାଲ ଦୁପଟ୍ଟା ଭର୍ତ୍ତି କରି ହେଙ୍କା ଟେକୁଛି ! ସିଏ କୁଆଡ଼େ ଅଇଁଠା ହୋଇ ଯାଇଛି !

ବଞ୍ଚିବା ଏକ ପ୍ରବଞ୍ଚନା ! ବିଧବା ବିଧବ୍ୟ ଲାଗୁଛି !

ବସ୍ତୁବୋଧ ହେଉନି ଚିତ୍ର; ବରଂ ନିସ୍‌ପ୍ରାଣ ଓ ନିରସ ! ପଡ଼ିଆଟେପରି ଲାଗୁଛି ଜୀବନ !

କାର୍ଲ ତ କହୁଥିଲା ଝିଅମାନେ କଲେଜ ଆସନ୍ତି ନା ପଢ଼ିବାକୁ, ବରଂ ମାର୍କେଟପରି ନିଜକୁ ଖୋଲି ଖାଲି ଦେଖେଇ ହେବାକୁ ! କଲେଜ ଗୋଟାଏ ସ୍ଥାନ ଯେଉଁଠି ଖୁବ୍ କିଣାବିକା ହୁଏ ମନ ! ପ୍ରଜାପତିମାନେ ଫୁଲମାନଙ୍କ ମୁହଁ ସାମ୍ନାରେ ଖୁବ୍ ଉଡ଼ି କ୍ରୟ କରନ୍ତି ସମାଜରେ ସ୍ଥାନ ନଥିବା ଏକ ଏକ କଳାନାଲି ଅକ୍ଷର ବୋଳା ଚିତ୍ରିତ କବଲା ! ଡାଏରୀରେ ସାଇତନ୍ତି ଥାକଥାକ ମିଛ ଟିପଚିହ୍ନ !

ଆନନ୍ଦ ବଜାରରେ ଯେତେ ଡାଲି ଚାଖିପାର ! ମନା କାହିଁ ? ମନଟା ବି ତ ଉଡ଼ନ୍ତା ଚଢ଼େଇ ! ଗୋଟିଏ ସବୁଜ ଡାଳରୁ ଆଉ ଏକ ସବୁଜ ଡାଳକୁ ଉଡ଼ି ଦେଖାଏ ନିଜ ଡେଣାର କାରିଗରୀ ! ପିଲା କୁବ୍ କୁବ୍ ହୋଇ ପାଣିରେ ପହଁରନ୍ତି ଯେମିତି !

ସବୁ ଭୁଲ୍ ହୋଇ ଯାଇଚି ! ଯେମିତି ତା' ସବୁ ଅସର୍ପି କିଏ ଲୁଟି ନେଇଛି !!

ସତରେ କିଏ ତା' ମନିପର୍ସଟା କାଢ଼ି ନେଇଛି ? ନାଁ ତ ! ବରଂ ସିଏ କାର୍ଲକୁ ଦେଇ ଦେଇଛି ! କାର୍ଲ ତା ସଞ୍ଚୟକୁ ଫୁଙ୍କି ଉଡ଼େଇ ଦେଇଛି ! ଏବେ ସିଏ ନିଃସ୍ୱ ! ଲେଉଟିବାକୁ ନାହିଁ ତା' ପାଥେୟ ! ତା' ସାମ୍ନାରେ ବିଛା ଯାଇଛି ପ୍ରଶ୍ନର ଭଗ୍ନ କାଚ ସାରା ପଥ ! ସିଏ ମୁକ୍ତ ପାଦ ! ଚାଲି ପାରିବ ତ ?

'ପୃଥିବୀରେ ସ୍ୱର୍ଗରାଜ୍ୟ ସ୍ଥାପନ ହିଁ ସଂସ୍କୃତିର ଜୀବନ୍ତ ଲକ୍ଷ୍ୟ !'

ସଂସ୍କୃତି, ତମେ ନିଜକୁ ଜାଣ ? ମଣିଷର ବୟସ କେତେ ?

ପୃଥିବୀକୁ ହେଲା ଏବେ କେତେ ବର୍ଷ ? କିଏ ସଂସ୍କୃତିର ପ୍ରେମିକ ?

ସିଏ ତ ଖଣ୍ଡେ ସଫେଦ୍ ଲୁଗା ନୁହେଁ ଯେ ମାରା ହୋଇଗଲା ! ସମୟ ପାଦପର ପକ୍ୱ ରସାଳ ନୁହେଁ ଯେ ଅଇଁଠା ହୋଇଗଲା ! ତେବେ ତା' ଭଲ ପାଇବାର ବ୍ୟାଖ୍ୟା ଭୁଲ୍



Source: Author, Digitized by PPRACHIN, SOA

ହୋଇଗଲା ? ହେଉ ! ସିଏ ମଣିଷ ! ମିଶାଣ ଫଳ ନୁହେଁ ! ଭୁଲ୍ କରିବା ତା' ସ୍ୱଭାବ ! ଯେମିତି ଉଚ୍ଚରୁ ନିମ୍ନକୁ ପ୍ରବାହିତ ହେବା ଜଳର ସ୍ୱଭାବ, ଅତି ବାସ୍ତବ !

ପୁଲିସ ହିରାସତ !

କାନ୍ଥକୁ ଆଉଜି କାର୍ଲ ବସିଛି ! ମହାମାନ୍ୟ ରାଷ୍ଟ୍ରପତିଙ୍କ ଦ୍ୱାରା ସିଏ ଜଣେ ମନୋନୀତ ଯୁବ ସାଂସଦ ! ହାଓଲା ଦୁର୍ନୀତିଗ୍ରସ୍ତ ! ପୁଣି 'ଫେରା' ଅଭିଯୁକ୍ତ !

'ସଂସ୍କୃତି ତମେ ମୋର ମନେ ପଡୁଚ ! ଖୁବ୍ ମନେ ପଡୁଚ ! ତମେ ମୋର ପ୍ରଥମ ପ୍ରେମ, ତମେ ମୋର ପ୍ରଥମ ଜହ୍ନ ଓ ମୁଁ ତୁମ ଦେହର ଚିଠିରେ ପ୍ରଥମ ରାତି ! ତମେ ମତେ ଭୁଲିଗଲ କେମିତି ? କେମିତି...... !!

ତମେ ମୋ ଅଗଁଠା ହେଲେ ବି ପବିତ୍ର ତୁଳସୀ !

ମୁଁ ଅଭିଯୁକ୍ତ କିନ୍ତୁ ନୁହେଁ ଅପରାଧୀ ! ସମ୍ମାନର ବହୁତଳ ସୌଧ ଉପରୁ ତଳକୁ ମୋତେ ଠେଲି ଦେଇଛି ରାଜନୀତି ! ହୁଏତ ମୋ ମୃତ୍ୟୁ ପରେ ମୋ ମୁହଁ ଉପରେ ଥୁକିବ ଏ ଜାତି ! କାରଣ ଏ ଦେଶକୁ ମୁଁ ପୁଣି ବିକି ଦେଇଛି !'

ରାତ୍ରୀ ଘନେଇଛି !

ବିସ୍କୁଟ୍ କିଙ୍ଗ୍ ରାଜନ ପିଳାଇପରି କାର୍ଲର ମୃତଦେହ ସକାଳକୁ ଠିକ୍ ସେମିତି ହିରାସତ କାନ୍ଥକୁ ଆଉଜି ରହିଛି ! ପାଖରେ ତା' ନିସ୍ବଲକ ଡୋଳାପରି ଡାଏରୀଟା ମେଲା ହୋଇ ପଡ଼ିଛି !

□□□



Source: Author, Digitized by PPRACHIN, SOA

# ସମୟ ଭୁଲ କରୁଚି ବ୍ୟାକରଣ

ଜେମ୍ସଜୟସ୍‌ଙ୍କ 'ୟୁଲିସିସ୍' - 'ଦେୟାର କ୍ୟାନ୍ ବି ନୋ ପ୍ଲଟ, ଓନ୍‌ଲୀ ଆନ୍ ଅନ୍‌ସିଲେକ୍ଟିଭ୍ ଡେସ୍‌କ୍ରିପ୍‌ସନ୍ ଅଫ୍ ଦି ଡେ ଟୁଡେ ଲାଇଫ୍ ଅଫ୍ ଆନ୍ ଆଇସୋଲେଟେଡ୍ ଇଣ୍ଡିଭିଜୁଆଲ୍'। ମାନ୍‌ଙ୍କ ଉପନ୍ୟାସ 'ମ୍ୟାଜିକ୍ ମାଉଣ୍ଟେନ୍' ସମ୍ବନ୍ଧରେ କୁହାଯାଇଛି- 'ଦି ଷ୍ଟୋରୀ ଅଫ୍ ହାନ୍ସ କାଷ୍ଟୋପ୍ ଇନ୍ ଦି ସାନିଟୋରିୟମ୍ ଇଜ୍ ନଟ୍ ଏ ଷ୍ଟୋରୀ, ବଟ୍ ଏ ସିରିଜ୍ ଅଫ୍ ଇଣ୍ଟେଲେକ୍‌ଚୁଆଲ୍ ଡିସ୍‌କସନ୍।'

ପ୍ରସିଦ୍ଧ ଉପନ୍ୟାସ 'ନସିଆ'ରେ ଚରିତ୍ର କହୁଛି- 'ମାଇଁ ମେମୋରିଜ୍ ଆର୍ ଲାଇକ୍ ଦି କଏନ୍ସ ଇନ୍ ଦି ଡେଭିଲ୍‌ସ ପର୍ସ : ହ୍ୱେନ୍ ଇଟ୍ ୱାଜ୍ ଓପେନ୍‌ଡ, ନଥିଂ ୱାଜ୍ ଫାଉଣ୍ଡ ଇନ୍ ଇଟ୍ ବଟ୍ ଡେଡ୍ ଲିଭିସ୍।' ତେଣୁ ଏମାନଙ୍କୁ କେମିତି ମିଳିବ ଫ୍ରେମ୍ ବଂଧା କାହାଣୀଯୁକ୍ତ ଉପନ୍ୟାସ ?

ମଣିଷ ଜୀବନର ଗୋଟିଏ ମୁହୂର୍ତ୍ତ ହିଁ ଗୋଟିଏ ଉପନ୍ୟାସ ଶିଳ୍ପର ପ୍ଲଟ !

ଆମ ସମୟର ଜଣେ ଶ୍ରେଷ୍ଠ ଶବ୍‌ଦଶିଳ୍ପୀ ମିଲନ୍ କୁଂଦେରା ଖଣ୍ଡିଏ ପୁସ୍ତକରେ ଉଲ୍ଲେଖ କରିଛନ୍ତି, 'Literature is a system of sign' ବୋଧହୁଏ ସାହିତ୍ୟର ଶେଷତମ ବା ସର୍ବାଧୁନିକ ସଂଜ୍ଞା ଏହା ! ସାହିତ୍ୟ ଏକ ସିମ୍ବଲ୍ ବା ଟେକ୍‌ନିକ୍। ଆଜିର ପୃଥିବୀରେ ସାହିତ୍ୟ ଏଭଳି ଏକ ଶବ୍‌ଦ କଳା ଯାହାର ସଠିକ୍ ସଂଜ୍ଞା ନିରୂପଣ ଅସମ୍ଭବ। ଆଧୁନିକ ଲେଖକ ଯାହା ଲେଖିଦିଏ, ତାହା ସାହିତ୍ୟ।

ସଂକଟରେ ସାହିତ୍ୟ / ନକୁଳ ଚଂଦ୍ର ସାହୁ



Source: Author, Digitized by PPRACHIN, SOA

# ତକ୍ଷକର ନିର୍ଭୁଲ ଠିକଣା

ଦୀପ ଜଳୁଛି ! ଦୀପ ମୃଣ୍ମୟ ! ଶିଖା ଚିନ୍ମୟ ! ଉଭୟଙ୍କ ସହଯୋଗ ପରିବେଶକୁ କରିଛି ଆଲୋକିତ ! ଦେହ ତ ମାଟିର ଦୀପ; ପୃଥ୍ୱୀ ତତ୍ତ୍ୱ ! ଆତ୍ମା ଆକାଶର ଅବିଚ୍ଛିନ୍ନ ଭଗ୍ନାଂଶ ! ଶିଖାୟିତ ଜ୍ୟୋତି ! ପରସ୍ପର ମିଳନରେ ମଣିଷ ବଂଚିଛି ! ସଂସାର ସମୁଦ୍ର ପରି ସୁନ୍ଦର ଦିଶୁଛି ।

ଦେହ ଦୁର୍ଗନ୍ଧ କର୍ଦ୍ଦମ ! ଦେହ ଊର୍ଦ୍ଧ୍ୱରେ ଲୀଳାୟିତ ଆତ୍ମା ଧବଳ ପଦ୍ମ ! କେହି ତ ନିଶ୍ଚୟ ସାଇତି ଥିଲା କର୍ଦ୍ଦମ ଅଭ୍ୟନ୍ତରରେ ଚିନ୍ମୟ ପଦ୍ମର ବୀଜ ! ତା’ ନ ହେଲେ କର୍ଦ୍ଦମପରି ଦୁର୍ଗନ୍ଧ ଓ ନିକୃଷ୍ଟ ଦ୍ରବ୍ୟ ଚିରି କିପରି ସମ୍ଭବ ହେଲା ସୁରଭିତ ଶୀତଳ ପଦ୍ମ ? କଲା ସିଏ କିଏ; କାହାର ସେ ହାତ, ଅଚିନ୍ତ୍ୟ ନିଜେ ତ ! ନିଜେ ଭାଗବତ ?

ଅଚିନ୍ତ୍ୟର ଠିକଣାଟା ଲେଖି ଦେବ ?

ମୁଁ ଆଘ୍ରାଣ କରୁଛି ଜମାଟ ବଂଧା ଜୀବନକୁ ନୁହେଁ; ମୃତ୍ୟୁର କୁତ୍ସିତ ଗନ୍ଧକୁ । ମୁଁ ଭୟ କରୁଛି ସରି ସରି ଆସୁଥିବା ଉପଭୋଗମାନଙ୍କୁ ! ମୃଣ୍ମୟଦୀପର ଭଙ୍ଗୁରତାକୁ !

‘ମୁଁ’

ବଂଧନୀ ଉନ୍ମୁକ୍ତ ସାଦା ଗୋଟିଏ ‘ମୁଁ’ ! ଆଗକୁ ଗଲେ ଯାହା, ପଛୁକୁ ଗଲେ ବି ସେଇ ରାସ୍ତା ! ଗୋଟିଏ ବୃତ୍ତ ! ମସୀକୃଷ୍ଣ ! ମିଥ୍ର ଦଧୀଚି ମୁଁ ନୁହେଁ, ଚୋଣ୍ଡିଥିର ଆର୍ଟିଷ୍ଟ ! କାନଭାସ୍ ସାରା ସ୍ୟାହି ଛିଂଚାଡ଼ି ଦେଲେ ହୁଏ ମୋ ଛବି ‘ବ୍ଲୁ ପୋଲ୍‌ସ’, ଶତାବ୍ଦୀର ଶ୍ରେଷ୍ଠ କଳାକୃତୀ !

ଆଖିର ପାପୁଲି ମୋ ମାପୁଛି ।

ଅଙ୍ଗୁଷ୍ଠ ମାତ୍ରମ୍...........

ଚତୁର୍ଦ୍ଦଶ ଆଙ୍ଗୁଳ ପରିମିତ ପଶ୍ଚିମରୁ ପୂର୍ବର ଦୂରତ୍ୱ !

ଶ୍ରୀମନ୍ଦିରରୁ ସମୁଦ୍ର ମାତ୍ର ସାଢ଼େ ତିନି ହାତ ! ଆଗକୁ – ଖୋଲା ହାଟ ! ହାଟରେ ପାଞ୍ଚ ବଣିକ ! କ୍ରେତା ଓ ବିକ୍ରେତା : ଦ୍ୱୟ ବନ୍ଦେ, ବନ୍ଦେ ଶ୍ରୀ ଭାବୁକା !



Source: Author, Digitized by PPRACHIN, SOA

ଅଗାଧ ମିଥ୍ୟା ଦ୍ୱାରା ସତ୍ୟ ହୋଇ ଯାଇଛି ବଡ଼ ବିକୃତ ! ମୋ ଦେହର ଠିକଣା ??

ବିଦ୍ୟା ସହ ଅବିଦ୍ୟାର ସହାବସ୍ଥାନ ବୈଶିଷ୍ଟ୍ୟ ?

ନେଗେଟିଭ ଓ ପଜେଟିଭ୍ ! ଶକ୍ତି ଗୋଟିଏ : ହିଟର୍‌ରେ ପାଣି ଗରମ ହୁଏ, ଫ୍ରିଜ୍‌ରେ ପାଣି ଶୀତଳ ହୁଏ ! ବିଦ୍ୟା ଦିଏ ଅମୃତତ୍ୱ ଓ ଅବିଦ୍ୟା ଦିଏ ମୃତ୍ୟୁ ସେତୁ ଆରପଟକୁ ଫେରିବାକୁ ସାମର୍ଥ୍ୟ ! ବଜାଅ ତାଳି ! ତାଳି ବଜାଅ ! ରଜ୍ଜୁ ଉପରେ ନାଚୁଛି କେଳୁଣୀ; ଇଡ଼ା ଓ ପିଙ୍ଗଳା ! ଜ୍ଞାନର ପ୍ରତିକୂଳ ନୀଳପକ୍ଷୀ ରଚିଛି ଲୀଳା ! ଲୀଳାୟିତ ତା' ପରିଧି ଭିତରେ ପରୀକ୍ଷିତ ଚକ୍ଷୁର ପଥଭ୍ରଷ୍ଟ ସ୍ୱୟଂଭୂ ସତ୍ତା ! ଅଣ୍ଡାଳୁଛି ସୀମା !

ପରୀକ୍ଷିତକୁ ପଚରାଗଲା : କ'ଣ ସୀମାଶୀର୍ଷ ? ଆଂଶିକର ସଂଜ୍ଞା କ'ଣ, ରାଜା ? କିଏ ଲକ୍ଷ୍ୟ, ରୂପ ନା' ପ୍ରତିରୂପ ? କାହାର ଏ ଶପଥ; କେଉଁ ପର୍ଯ୍ୟନ୍ତ ?

ବିଶ୍ୱ ଅସ୍ତିତ୍ୱ : ଶ୍ରୀ ମନ୍ଦିରରୁ ସମୁଦ୍ର ଆଡ଼କୁ ଲମ୍ବିଥିବା ପଥର ଦୂରତ୍ୱ !

ରାସ୍ତା ଦୁଇ ପାର୍ଶ୍ୱ ଭିକ୍ଷୁକ କୁଷ୍ଠ ! ଗାମୁଛାରେ ବିଂଚା ପଇସା ଓ ମୁଠା ମୁଠା ଚାଉଳ ! ମଝିରେ ମଝିରେ ରାମେଶ୍ୱରରୁ ଅଣା ସାମୁଦ୍ରିକ ପସରା ଦୋକାନ ! ଚା' ଓ ଚନ୍ଦନପୁର ପାନ ! ସମ୍ବଲପୁର ବସ୍ତ୍ର ! କୋଲ୍‌କାଟା ସୁଇଟିସ୍ ଓ ବେଙ୍ଗଲୀ ମଠ, ଏ ସବୁକୁ ଟପିଗଲେ, ପଛକୁ ଟପିଗଲେ ସିଂହଦ୍ୱାର, ବାଇଶି ପାବଚ୍ଛ ! ରତ୍ନବେଦୀ, ଖୋଲା ହାଟ ଓ ନିର୍ମଳ ବିବେକ ! ସେଇଠି ବସିଛ ତୁମେ, ରାଜା ପରୀକ୍ଷିତ ! ନିର୍ବିକଳ୍ପ ! ଆଉ ତୁମ ପାଖେ ପାଖେ ଅଛି, ସେଇଠି ତୁମ ମୋ ଦେହର ଅବିଚ୍ଛିନ୍ନ ଭଗ୍ନାଂଶ : ତକ୍ଷକ !!

ନିଜ ଛାଇକୁ ଦେଖି ପାରୁ ନାହିଁ ?

ପ୍ରତ୍ୟେକ ରୂପର ଛାୟା ଥାଏ, ରାଜା ! ବସ୍ତୁକୁ ଅସ୍ୱୀକାର କରି ହୁଏନି ! ଛାୟାକୁ ସେମିତି ବିତାଡ଼ିତ କରିହୁଏ ନାହିଁ ! ରୂପ ସୃଷ୍ଟି କରେ ମାୟା ! ମାୟା ଯେ ସ୍ୱୟଂ ଦୁର୍ଗା ! ତୁମ ଦେହ ଦୁର୍ଗର ରକ୍ଷିକା ! ତାଙ୍କୁ ଅସ୍ୱୀକାର କରିବ ? ଶ୍ରୀ ମନ୍ଦିରଠୁ ସମୁଦ୍ରର ଦୂରତାକୁ କିଏ ଅପାଶୋରିବ ?

ପରୀକ୍ଷିତଙ୍କ ଚକ୍ଷୁର ମୁଲାୟମ ସ୍ୱର୍ଣ୍ଣ ପାଖୁଡ଼ା ଧୀରେ ଧୀରେ ହୋଇ ଆସୁଛି ବୁଜି ! ମେଘନାଦ ପ୍ରାଚୀର ଟପି ଶୁଭୁ ନାହିଁ ସମୁଦ୍ରର ଅସୁସ୍ଥ ଚିତ୍କାର ! ଉର୍ଦ୍ଧ୍ୱାୟିତ ରକ୍ତାଭ ଶିଖା ଝଲମଲ କରାଉଛି ଦେବଦାସୀର ଲୋଭନୀୟ ଅଂଗ ! ଜୟଦେବର ଲଳିତ କୋମଳ କାନ୍ତ ପଦାବଳୀ ମଧୁକଣ୍ଠୀ ଗାଇ ଗାଇ ସମର୍ପି ହେଉଛି ସଙ୍ଗ !



Source: Author, Digitized by PPRACHIN, SOA

ପୀନ ପୟୋଧର ପରିସର ମର୍ଦ୍ଦନ କର, କର......... କର ଯୁଗ୍ମ ଚାଳି ! ପୂରୟ ମଧୁରିପୁ କାମମ୍ ! ଜ୍ୱଳତି ମୟି ଦାରୁଣୋ .... ବିକାରମ୍ !

ଘନ ଘୋର ବନ ! ଘନ ତିମିର ! ନୀଳ ତମାଳ ନିକୁଂଜ ଲତା ତଳ ! ମଦନ ଉନ୍ମତ୍ତ ପବନ ବୋହି ଆଣୁଛି ଦୂରରୁ କା' ରଣରଣ ନୂପୂର ନିକ୍ୱଣ ! କିଏ ଆସୁଛି ? ବନପୁଷ୍ପ ମହମହ ଚନ୍ଦନ ଚର୍ଚ୍ଚିତ ମୃଗମଦ ତିଳକ ଲେପିତ ଅପୂର୍ବ ତା' ତନୁ ! ସେ କିଏ ଆସୁଛି ?

ଆସୁ !

ପରୀକ୍ଷିତ ବୁଜି ଦେଇଛି ଆଖି ! !

ପ୍ରଦୀପିତ ଦୀପଶିଖା; ନିଗିଡ଼ି ଆସୁଥିବା ଓଲଟ ମଧୁ ଏକବୁନ୍ଦା ! ତାକୁ ଚାଟିନେଲା ଜିହ୍ୱା ! ଆଦିତ୍ୟସ୍ୟ କୃଷ୍ଣ ରୂପମ୍....ରଶ୍ମିମାନ ମଧୁ ନାଡ଼ି ! ଯଶ, ତେଜ, ଇନ୍ଦ୍ରିୟ, ବୀର୍ଯ୍ୟ ଓ ଅନ୍ନ ସବୁ ଶୂନ୍‌ଶାନ୍ ! ଶାନ୍ତ ଅଗ୍ନି; ସ୍ତବ୍ଧ ସ୍ଫୁଲିଙ୍ଗ, ମୂକ ପବମାନ ! ଉତ୍ତେଜନା ଆକାଂକ୍ଷା ତୃପ୍ତ ବୁଢ଼ିଆଣୀ ଏବେ ଜାଲରେ, କେନ୍ଦ୍ରରେ ଚୁପ୍‌ଚାପ୍ ! କାଳିଦାସଙ୍କ କାବ୍ୟ ଚାତୁରୀ ମଝିରେ ଗ୍ୟାପ୍ ! ତାଙ୍କୁ ଦେଖାଯାଉ ନାହିଁ ଆଉ କିଛି; ଅରଣ୍ୟସାରା ଫଳଭର୍ତ୍ତି ! ତାଳ, ବିଲ୍ୱ, ଆମ୍ର, ନାରୀକେଳ – ସବୁ ନାରୀ ସ୍ତନ ! ଖାଲି ସ୍ତନ !!

ସୌନ୍ଦର୍ଯ୍ୟଠୁ ଫେରାଇ ନେବ ଆଖି ? ସବୁଜ ଆନନ୍ଦଠୁ ପଳାଇ ଯିବ ? ଯିବା ପଳାଇ ଶ୍ରୀମନ୍ଦିର ଓ ସମୁଦ୍ରଠୁ ? କେଉଁ ପର୍ଯ୍ୟନ୍ତ ? ଶୈଶବଠୁ, ଯୌବନ ଓ ବିସର୍ଗ ଯାଏ ତ ?

ଯାଅ, ଯାଅ ପରୀକ୍ଷିତ, ତୁମ ସାମ୍ନାରେ ପୂର୍ଣ୍ଣ କଳସ ! କଳସ ଉପରେ ଏକ ଭର୍ତ୍ତି ନାରୀକେଳ; ଶ୍ରୀ ଗଣେଶ !

ନାରୀକେଳ ଜଟା ଭିତରୁ ହଠାତ୍ ବାହାରି ଆସିଛି ବେନାଏ ନୀଳ ନୀଳ ଗ୍ୟାପ୍ ! ତ୍ୱଚା ଉପରେ ତା' ବସେଇ ଦେଇଛି ଦାନ୍ତ ! 'ତ୍ୱଗ୍ ବୈ ଗ୍ରହଃ ! ସ୍ପର୍ଶାନ୍ ବେଦାୟତ୍' !

ଭଙ୍ଗା ଓ ଢିଲା ଦେହାଂଶକୁ ଜାବୁଡ଼ି ଧରିଛି ବ୍ରା'ର ହାତ !

'ତମେ ସୁନ୍ଦର ବହୁତ, ବହୁତ ସୁନ୍ଦର' – ଜୟଦେବ ଗାଇଛି ତା ଗୀତ !

ଆତ୍ମାର କାମନାରେ ମ୍ଳାନ ହୋଇ ଯାଇଛି ପ୍ରିୟ ! ପରୀକ୍ଷିତ କେତେବେଳେ କେଜାଣି ଛାଡ଼ି ଯାଇଛି ତା' ଦେହ !!

ତଳକୁ ଆସ ! ପଢ଼ିବ ପାସ୍କେଲ ?



Source: Author, Digitized by PPRACHIN, SOA

ମଣିଷର ପୀତରଙ୍ଗ ଭାଗ୍ୟ ! ନିରୀହ ପବନ ପାଣି ଭିତରକୁ ଫିଙ୍ଗି ଦେଲା ଢାଲ ! ହଠାତ୍ ତମେ ଫିଟେଇ ଦେଇ ଡଙ୍ଗା ! ସଚ୍ଚିବାବୁ ଯିଦ୍ କଲେ : ଆକାଶ ଓଡ଼ିଆ ନୁହେଁ ବଙ୍ଗଳା ! ଆଉ ବଙ୍ଗବାଳା ? ମହାଭାରତର ଦ୍ରୌପଦୀ  ରୂପା ଗାଙ୍ଗୁଲୀ ଆଃ, କି ବଢ଼ିଆ ବିସ୍କୁଟ୍ ! ପବନର ପାନିଆରେ କୁଆଡ଼େ ତା' ବାଳ ବାନ୍ଧିବ ରାତି ?

ମୁହଁରେ ଖାକିର ହସ, ଅଳକା ସାନ୍ୟାଲ ଏବେ ବସିବ କେଉଁଠି ? ଛିଃ, ସର୍କସ କମ୍ପାନୀର କୌଣସି ଟୀର୍ଲୀକୁ ମୁଁ ଆଉ କେବେ ମୋ ଶଗଡ଼ରେ ନେବିନି ! କାରଣ ? ଗୌର ହରି ଦାସଙ୍କ 'ମାଟି କଣ୍ଢେଇ' ପ୍ରତ୍ୟେକ ମଣିଷ ! ବାଘୁଣୀର କି ନଜର...... !

ଫିକା ହୋଇ ଯାଉଛି ପବନ! କାହିଁକି ତୁମେ ନଜର କରୁଛ ଯେ ତୁମେ ଯାଉଛ କୁଆଡ଼େ ? 'ସ୍ଥାଣୁଃ ଅଚଳୋଽୟଂ' ........! ଦେହଟା କଞ୍ଚା ପରିବା !

ପରିବାର କି ଉତ୍କଟ ଗନ୍ଧ ! କଞ୍ଚା ଓ ପଚା ! ବାଛି ନିଏ କଞ୍ଚା ଛାଡ଼ି ଯାଏ ପାଚିଲା !

ଏକ ଚକେ ରଥ ଚଳୁଥିଲା, ବେନି ଚକେ ରଥ ନ ଚଳିଲା !

କ'ଣ ତୁମେ ଆଶା କରୁଛ, ପରୀକ୍ଷିତ ?

'ଉହୁଁ, କିଛି ନୁହେଁ, ନଥିଙ୍ଗ୍ ଆଟ୍ ଅଲ୍' ! ..... ଆମେ ସବୁ ଦଣ୍ଡିତ ! ଆମେ ଆମ ସମୟ ବାହାରେ ଜୀବିତ ! ଜଣେ ଜଣେ ପୁନର୍ଜାତ ମୃତ ଖ୍ରୀଷ୍ଟ !ଭାନ୍‌ଗୋଘ୍‌ର 'ଲେଟର୍ସ' ! ଧର୍ମ ତା' ଆର୍ଟ ! ଜୀବନ ତା' ଚର୍ଚ୍ଚ ! ଦୁଇ ସହସ୍ର ବର୍ଷ ତଳର ସିଏ ସେଇ ମୃତ ଖ୍ରୀଷ୍ଟ ! ଏବେ ଗଢ଼ି ଉଠୁଥିବା ଚର୍ଚ୍ଚମାନଙ୍କରେ ହେଉଛି ତା' ପୁନର୍ଜନ୍ମ ! ସ୍ୱେଦ ଓ ସଂଗ୍ରାମ – ସଭ୍ୟତା ଉଷାକାଳର କଥା ! 'ପ୍ରତିଯୋଗିତା' ଶିକାର ପାଇଁ ବଣୁଆର ଜୀବନ କବିତା ! ସେ କବିତା ଲେଖିନି ରମାରଥ କିମ୍ବା ଡେରିକ୍ ୱାଲକଟ ! ଇଲିୟଟ ଦେଖାଯାଏ ଯେମିତି ପ୍ରୁଫ୍ରକ୍ : ପରିଚିତ ଅସୁସ୍ଥ ଆୟୁଷ !

'ନର' 'ନାରାୟଣ' ! 'ବ୍ରହ୍ମୈବାହଂ ନ ଚ ଶୋକଭାକ୍ ..... !'

'ଲେଟର୍ସ' ଫର୍ଦ୍ଦସବୁ ତା'ର ଇନ୍ଦ୍ରନୀଳ ନିର୍ମିତ ! ଡାଏରୀପରି ଦିଶୁଥିବା ଖଣ୍ଡିଏ ଭାଗବତ ! ଓଠରେ ଅଠାଳିଆ ଗୋଟିକିଆ ଶବ୍ଦ ! ଏକେଲା ରଙ୍ଗ : 'କୃଷ୍ଣ' ! ପୁଣି – 'କୃଷ୍ଣ' ଫେରିବା ବେଳେ ସ୍ମରିବା ଗୋଟିଏ ରାସ୍ତା !

ମଡର୍ଣ୍ଣ ପେଣ୍ଟିଂ ଯେମିତି ସ୍ତୁତି ! ତା' ପାଇଁ ରଙ୍ଗ ଆଉ ଅଛି କିଛି ? ଖାଲି କୃଷ୍ଣ ! ସତେଇଶ ପ୍ରକାର ! ଶ୍ୱେତକୁ ବି ଆଙ୍କି ହୋଇଯାଏ କୃଷ୍ଣରେ ! 'ମୁଁ ଅପେକ୍ଷାକୃତ



Source: Author, Digitized by PPRACHIN, SOA

ଅଧିକ ପସନ୍ଦ କରେ ଆଙ୍କିବାକୁ, ମଣିଷର କଳାକଳା ଆଖି ! ପସନ୍ଦ କରେନା ଚିତ୍ରିବାକୁ ଦେବତାର ବହୁମୂଲ୍ୟ ମୂର୍ତ୍ତି । ମଣିଷ ଆଖି ଭିତରେ ଅଛି ଯାହା ଦେବ ମୂର୍ତ୍ତିରେ ଅଛି କି ତା' ? ଭାନ୍‌ଗୋଘ୍ ଲେଖି ଦେଇଛି ! କୃଷ୍ଣ ଭବିଷ୍ୟତ କଥନ ସକ୍ଷମ ରଙ୍ଗ ! ସଙ୍ଗୀତ ପୂର୍ଣ୍ଣ ! ରେମ୍ବ୍ରାଣ୍ଡଟ, ଫ୍ରାଁଜ ହଲ୍‌ସ କିମ୍ବା ଭିଲାସ କ୍ୱେଜଙ୍କୁ ପଚାରି ବୁଝ ! ରଙ୍ଗର ଆଇନଷ୍ଟ ଡିଲା କ୍ରୋୟିକ୍ସ ! ସେ କହନ୍ତି, ସଫେଦ୍ ଓ କୃଷ୍ଣ, ଜୀଇବାର ରଙ୍ଗ, ମାତ୍ର ଦୁଇଟି ! କୃଷ୍ଣ - ନାରୀର ବ୍ରହ୍ମାନନ୍ଦ ସହୋଦର ଦାୟକ ପ୍ରାକୃତିକ ଦେହାଂଶ ! ଭାନ୍‌ଗୋଘ୍‌ର ସାରା କାନ୍‌ଭାସ କଳା; ଶେଖ୍ ନିଫ୍‌ଜାଓ୍ୱର 'ଦି ପର୍ଫୁମଡ୍ ଗାର୍ଡେନ୍ !' ଚକ୍ଷୁ ପାଇଁ ଯଂତ୍ରଣା, ମୁକ୍ତି ଓ ତୃପ୍ତିର ବର୍ଡେନ ! ପାହାଡ଼ପରି ପୁରୁଣା ଠିଆ ହୋଇଥିବା କୃଷ୍ଣ ରାତ୍ରୀ ମାରିଲା ଏକ ଲଙ୍ଗଜମ୍ପ ! କାଳେ ପରୀକ୍ଷିତ ଖୋଲିଦେବ ତା' ଦ୍ୱାର ?

'ମୁଁ ଯରାଥୁଷ୍ଟ୍ର ! ଯରାଥୁଷ୍ଟ୍ର କହୁଚି : ରାତ୍ରୀ ଭିତରେ ଜୀବନ ବୋଧ ହେଉଛି ନିର୍ବାସିତ ! ଜୀବନ ? ସାରା ଦିନ ଯିଏ ଶାସନ କରିଥିଲା ଏବେ ସିଏ ହେଉଛି ନିର୍ବାସିତ ! ନିତ୍‌ସେଙ୍କ ଏଇ ଧାଡ଼ି ଜନ୍ମ କରିଛି ମଡର୍ଣ୍ଣ ସାଇକୋଲଜି ! 'ଧ୍ରୁବଂଜନ୍ମ ମୃତସ୍ୟ ଚ' !

ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ ! ...... ଅସୁରପରି ବୃହତ ଓ ସୀମାହୀନ, ସହଜାତ ମନସ୍ତତ୍ୱର ଚିତ୍ରିତ - 'ମୁଁ' ! ମୁଁ ପରୀକ୍ଷିତ ଏବଂ ମୁଁ ନିଜେଇ ତକ୍ଷକ ! ମୃତ୍ୟୁ ଏକ ନିଂଫୋମାନିଆକ୍ ! ମୃତ୍ୟୁ ରୋମାନ୍ ସମ୍ରାଟ କ୍ଲାଉଡିଅସ୍‌ଙ୍କ ଯୁବତୀ ରୂପବତୀ ଚିର ତୃଷିତା ସାମ୍ରାଜ୍ଞୀ 'ମିଶାଲିନା' ! ଝିଟିପିଟି ଚୁଚୁମି ଚୁଚୁମି ଢୋକି ଦିଏ ସାରା ରେଜିମେଣ୍ଟ ଇନ୍ ଏ ସିଙ୍ଗିଲ୍ ନାଇଟ୍ ! ସିଏ କ୍ଲିଓପାଟ୍ରା; ଯୋନି ତା' ପାଟିଟା ! କାଥେରିନ୍ ଦି ଗ୍ରେଟ୍ ସ୍ଥାୟୀ ଉତ୍ତେଜିତା ! କୂପ ସାରା ଭର୍ତ୍ତି ରଡ଼ରଡ଼ ନିଆଁ !

ମାଛ ଧରୁଥିବା ସିମନଙ୍କୁ କହିଥିଲେ ଖ୍ରୀଷ୍ଟ, ଜାଲ ଛାଡ଼, ଫଲୋ ମି !

କହିଥିଲା ସିଏ, ଏକାକି ରହିବାକୁ ଛାଡ଼ିଦିଅ ମତେ ! ମୁଁ ପସନ୍ଦ କରେ ମୋ ଜାଲ ଓ ମାଛ ! ଆଉ ପରୀକ୍ଷିତ...... ?

ତେବେ ତୁମେ ଆଉ ସର୍ଜନା କରୁଛ କ'ଣ କବି ? କେଉଁ ଛବି ? 'ଆଲି ଗୋରିଜ୍ ଅଫ୍ ସିନ୍' - କୋରିଜିଓଙ୍କ ଅଙ୍କିତ ଚିତ୍ର ! ଭ୍ରଷ୍ଟାଚାର ହେତୁ ସମସ୍ତେ ହସ ହସ ?

ଗୋଟିଏ ବ୍ରେସିୟର କରେ କ'ଣ ପ୍ରକଟ ?

ନାରୀ ଯୌବନର ଟେକ୍‌ନିକାଲ୍ ନେଚର୍ ତ !

ଆଲିଙ୍ଗନ କ'ଣ ?

ବିନାଶେନ ମୃତ୍ୟୁତୀଦ୍ୱା ! ଯସ୍ୟ ଛାୟାଽମୃତଂ ତସ୍ୟ...... କାମୋତ୍ପନ୍ନ ଅନୁଭୂତି !!



Source: Author, Digitized by PPRACHIN, SOA

ପରୀକ୍ଷିତ ପ୍ରେମରେ ପଡ଼ିଛି ! ଦୁଇବାହୁ ତାକୁ ଆଲିଙ୍ଗନ କରିଛି ! ସବୁ ଅଶୁଭ ପ୍ରତିକାରର ଅବ୍ୟର୍ଥ ଔଷଧ – ପ୍ରେମ ! 'ରେନ୍ ଥ୍ରୋ ଦି ନାଇଟ୍' ବୁଦ୍ଧଦେବ ବୋଷଙ୍କ ମାଳତୀ ଆଖିରେ ପ୍ରଶ୍ନ ଚହଟିଛି, Then Love is not reckless and wild ? ପୁରୁଷର ଆଖି ଦି'ଟା ନାରୀକୁ ବୁଝେଇ ଦିଏ ପ୍ରତ୍ୟେକ କଥା ! କିଏ କହିଥିଲା, 'ଓ୍ୱମ୍ୟାନ୍ ଇଜ୍ ଦି ଫ୍ୟୁଚର ଅଫ୍ ଦ ମ୍ୟାନ୍' ? ଲୁଇ ଆରାଗଁ ! କ୍ୟାନସର ବିଷୟରେ ତୁମେ କ'ଣ ଭାବ ? ସମୟର କ୍ୟାନସର ଖାଇ ଚାଲିଛି ସମସ୍ତିଙ୍କୁ ! ପରୀକ୍ଷିତ କେମିତି ବାଦ ଦେବ ନିଜକୁ ?

ବାଲିକ୍ଷେତ ପାରି ହେଉଚି ବିଲେଇ ପରି ନିଃଶବ୍ଦରେ ବିଷର୍ଣ୍ଣ ରାତ୍ରୀ ! ଅନ୍ଧାର ଗିଳି ସାରିଛି ପାତାଳ, ଆକାଶ ଓ ପୃଥ୍ୱୀ ! ପ୍ରେମିକ ଲଫାପା ଭିତରୁ କାଢ଼ି ନେଇଛି ପ୍ରଣୟିନୀର ଗୋପନ ଚିଠି । ଅଶ୍ୱତଥ୍ ମୂଳେ ଚିରା ଲଫାପା ଖଣ୍ଡେ ପଡ଼ି ରହିଛି ! ପଡ଼ିରହିଚି ସ୍ମୃତି ! ଉତ୍ତରର ସଫଦର ଗଂଜଠୁ ଦକ୍ଷିଣର ପେରାମ୍ବୁଦୁର ପର୍ଯ୍ୟନ୍ତ ତକ୍ଷକ ପହଂଚି ପାରିଛି ! ସୁରକ୍ଷା ଓ ସଂରକ୍ଷଣ ସବୁ ଫେଲ୍ ମାରିଛି! ଜଳରୁ ଛଣା ମାଛପରି ଜନ୍ମେଜୟ ନିଜକୁ ଖୁବ୍ ବାଡ଼େଇ କଚାଡୁଛି ! ମରୁନି ଭିଲିଆନ୍, ମରିଯାଏ ଏବେ ବହିର ନାୟକ ! ସବୁବେଳେ ଜିତୁଥିଲା ସତ୍ୟ ! ଏବେ ଆଉ ହାରେ ନାହିଁ ଘୃଣିତ ଅସତ୍ୟ !

ପରୀକ୍ଷିତ ଛକି ବସିଛି! ତା' ଚାରିପଟେ କୃଷ୍ଣ ନାମ; ସମୟର ଅନିବାର୍ଯ୍ୟ ବାଡ଼ ! ଦୁଇରୁ ଦ୍ୱାଦଶ ସ୍କନ୍ଦ ଗନ୍ଧର ସଶବ୍ଦ ମକରନ୍ଦ! ଅଥଚ – ଦେବ ପଂକ୍ତିରେ ରାହୁ ପାନ କରି ଦେଲା ଅମୃତ !!

ଜନ୍ମେଜୟର ଶୋକାଚ୍ଛନ୍ନ ଚକ୍ଷୁ ଭିତରେ ପ୍ରତିଶୋଧର ବହ୍ନିଠୁ ହାଲୁକା ଦୁଃଖ ଓ ପ୍ରଶ୍ନ : ମଣିଷର ଅଧୀନସ୍ଥ ମୃତ୍ୟୁ ? ମୃତ୍ୟୁ ଋଷିପୁତ୍ର କଣ୍ଠର କିଙ୍କର ? ମୃତ୍ୟୁ ତକ୍ଷକର ଅଧୀନସ୍ଥ ନିରୀହ ସେବକ ?.... ହେ କୃଷ୍ଣ, ତେବେ ତ ଭୁଲ୍ ହୋଇ ଗଲା ତୁମ ଅମୃତର ଭାଷ୍ୟ ? ଭୁଲ ହୋଇଗଲା ତୁମ ବ୍ୟାକରଣର ସୂତ୍ର !!

ଅପରାଧ, ଅପରାଧୀ ଓ ଦଣ୍ଡ – କର୍ମ ବୃକ୍ଷୋତ୍ପନ୍ନ ! ଏମାନଙ୍କୁ ଦେଖିଥିଲା ବେଲାଳ ସେନ ? 'ନ କର୍ତ୍ତୃତ୍ୱଂ ନ କର୍ମାଣି ଲୋକସ୍ୟ ସୃଜତି ପ୍ରଭୁଃ !' ପାପ କି ପୁଣ୍ୟ ତମେ ତ ଦିଅ ନାହିଁ କିଛି, କି ନିଅ ନାହିଁ ! 'ଅଜ୍ଞାନେନା ବୃତଂ ତେନ ମୁହ୍ୟନ୍ତି ଜନ୍ତବଃ' ବିଦାୟ ପକ୍ଷୀ ! ବିଦାୟ......

ଉର୍ଦ୍ଧାୟିତ ଶିଖାକୁ ପାଛୋଟି ନେଉଛି ଆକାଶ ! ଶୂନ୍ୟ ମୃଣ୍ମୟ ଦୀପ, ଅଶୁଭ ! ଶବ ! କିନ୍ତୁ ମାଟି, ମାଟିରେ ମିଶିବ ! ଦେବ ଆତ୍ମା ଦେବ ଲୋକକୁ ଫେରିବ!

□□□



Source: Author, Digitized by PPRACHIN, SOA

# ଏକରେ ଏକ ମିଶିଲେ ହୁଏ ଏଗାର

ହୃଦୟ ଭୋକିଲା, ଏକ ଗଳଦଘର୍ମ ପେଚା !

ତଥାପି-

ମୁଁ ଖୋଜୁଛି କ'ଣ ? ପୁଣ୍ୟ, ନିଷ୍କପଟତା, ଯୌବନ ? ଯାହା ଥରେ ନଷ୍ଟ ହେଲେ ଆଉ ଫେରେନା ତ ?

ଅନୁଭୂତି, ବୟସ ଓ ବନ୍ଧ୍ୟା ପ୍ରଜ୍ଞାଠୁଁ ଆଉ କ'ଣ ଅଦରକାର ?

ଦାରିଦ୍ର୍ୟ, ଅସୁସ୍ଥତା ଓ ନିଃସଙ୍ଗତା !!

ମୁଁ ଜଣେ ଦାର୍ଶନିକ ଏବଂ ଭାବପ୍ରବଣ ବ୍ୟକ୍ତି । ମୋ ପାଇଁ ଏଇ ଲେମ୍ବୁ ବିକା ବ୍ୟବସାୟ ହିଁ ଠିକ୍ ! ମୋ ଭିତରେ ଗୋଟାଏ ଫାଙ୍କ ରହିଛି, କ'ଣ ଏହାକୁ ପୂର୍ଣ୍ଣ କରି ପାରିବ ? ରୋଜଗାର ! ଅତି ନୈରାଶ୍ୟ ? ସୁଖ ! ସୁଖ କ'ଣ ? ଶିଥିଳତା ? ଇସ୍ତଫା ? ମୃତ୍ୟୁ ? କେଉଁଥି ପାଇଁ ବଞ୍ଚିଛି ମୁଁ ? କେଉଁଥି ପାଇଁ ଜୀବିତ ମୁଁ ?

ଆପଣ –

ଖୋଜୁଛନ୍ତି କ'ଣ ?

ମୋ ଅନୁମାନ, ଏଇଆ ଯଦି ମୁଁ ଠିକ୍ ଜାଣିଥାଏ ? କୁଆଡ଼େ ଦୌଡ଼ୁଛନ୍ତି ?

ଛାଡ଼ ତାକୁ ? କେହି ଏଠି ପାଏ ନାହିଁ କିଛି ! ଅନୁଭବ ବ୍ୟତୀତ ଜୀବନ ନୁହେଁ ଜୀବନ୍ତ ! ଆର୍ଟ୍ ସବୁବେଳେ ଚମ୍ପିଆନ୍ ଓ ହ୍ୟୁମାନିଷ୍ଟିକ୍ ! ସୌନ୍ଦର୍ଯ୍ୟ ନୈତିକତାଠୁ ଅବିଛେଦ୍ୟିତ ! ସାଂଗୀତିକତା ଓ ନାଟକୀୟତା ଗତ ଶତକ ସାହିତ୍ୟର ସର୍ବଶ୍ରେଷ୍ଠ ଅନ୍ତର୍ବସ୍ତ୍ର ! ମନର ଆଖିକୁ କରିଛି ଆକର୍ଷିତ !

ଆର୍ଟ୍ ଇମେଜ୍‌ମାନଙ୍କ ଭାଷା ! ଭାଷାମାନଙ୍କ କାର୍ଯ୍ୟ ହେଲା ସ୍ଥାପନ କରିବା କମ୍ୟୁନିକେସନ୍ ! ନୁହେଁ ସୃଷ୍ଟି କରିବା ବ୍ୟାକରଣ ନିୟମର ଗଚ୍ଛିତ ଧନ ! ମଣିଷ ଗୋଟିଏ ବସ୍ତୁ ! ବିଜ୍ଞାନ କରିଛି ତା' ଅନୁଶୀଳନ ! ଟେକ୍‌ନୋଲଜି କରୁଛି ତା' ନିୟନ୍ତ୍ରଣ ! ମନୋବିଜ୍ଞାନ ଗଠନ କରୁଛି ତା' ମନର ମୂର୍ତ୍ତି, ପୁଲକ ଅର୍ଥନୀତି ତାକୁ କିଣି



Source: Author, Digitized by PPRACHIN, SOA

ଦେଉଛି ! ରାଜନୈତିକ ଭୂଗୋଳ ତା’ ଜୀଇଁ ରହିବାର ସତ୍ୟର ସୂର୍ଯ୍ୟକୁ କରୁଛି ଉଜ୍ଜ୍ୱଳ ! ଇମିତି ଗୋଟିଏ ଜୀବନ....ଇମିତି : ଟିକ୍-ଟିକ୍ ! ଟିକ୍-ଟିକ୍ ! ଟିକ୍-ଟିକ୍....

ଗୋଟାଏ ଟିକ୍‌ରୁ ଆଉ ଗୋଟାଏ ଟିକ୍ ମଧ୍ୟରେ ଥିବା ଗ୍ୟାପ୍ ତକ ହିଁ ତମେ ! ଗୋଟାଏ ଟିକ୍‌ରୁ ଆଉ ଗୋଟାଏ ଟିକ୍ ମଧ୍ୟରେ ଥିବା ବ୍ୟବଧାନ ତମ ମୋ ସଂପର୍କ ! ଗୋଟାଏ ଟିକ୍‌ରୁ ଆଉ ଗୋଟାଏ ଟିକ୍ ମଧ୍ୟରେ ଥିବା ଶୂନ୍ୟତା; ସେଇ ଫାଙ୍କା ତକ ଏ ଗପ !

ସମୟର ହ୍ୟୁମାନାଇଜେସନ !

ତମେ ଏକ ସିଂବଲ୍ ପି’ !ପି’ ତମକୁ ମୁଁ ଡାକିଚି ! ପରୀକ୍ଷିତର ପୁନର୍ଜନ୍ମ ଘଟିଛି !

ସମୟର ମୁଁ ଗୋଟାଏ ନାଁ ଦେଇଛି, ପି’ !

ତମେ ଗୋଟାଏ ଫୁଲ କ୍ଷେତର ବାଡ଼ !

ସମ୍ପର୍କ ହିଂସାର ଅନ୍ୟନାମ ! ଅକ୍ତିଆର କରିବାର ନୂତନ ଠିକଣା ! ଫୁଲକ୍ଷେତକୁ ଅକ୍ତିଆର କରିଛି ବାଡ଼ ! କାକଟସ୍ ବାଡ଼ଟିଏ ହୋଇ ଠିଆ ହୋଇଛି ! ଏକ ପାଦରେ ଠିଆ ହୋଇଥିବା ବୃକ୍ଷଭକୁ କ’ଣ ରୁବୀମିଶ୍ର ଜାଣିଛି ?

ପି, ତମେ ଗୋଟିଏ ପାତ୍ର, ଯା ଭିତରେ ଭର୍ତ୍ତି ଚିତାଭସ୍ମ ଗୋଟିଏ ଭବିଷ୍ୟତର ! ଚିତାଭସ୍ମ ଭିତରେ ଗୋଟିଏ ମନିପ୍ଲାଣ୍ଟ୍‌ର ଚେର ! କିଏ ଲଗାଇଛି ? ରୁବୀ ମିଶ୍ର !

ତମକୁ ଭୟ ଲାଗୁଛି ? କାହାକୁ ? ଏଇ ଚିତାଭସ୍ମକୁ ଦେଖି ନ ଲାଗୁଥିବା ଭୟଟିକୁ ?

ହାଃ ତାରି ନାଁ ତ ଲାଇଫ୍ !

ସେଇ ଲଭ୍; ତମ ସହ ମୋ ରିଲେସନ !

ସ୍ୱଚ୍ଛ ଜଳ ଭିତରେ ପହଁରୁଥିବା ମାଛଟାର ଲମ୍ବ ମାତ୍ର ଛ ଇଞ୍ଚ ! ପଶାକାଠିର ଲମ୍ବ ମାତ୍ର ଛ ଇଞ୍ଚ ! ଚନ୍ଦ୍ରଭାଗା ତୀର୍ଥରେ ମଧୁର ଜଳର ଗଭୀରତା ମାତ୍ର ଛ ଇଞ୍ଚ ! ତା ପରେ.....

ବେଳା ଭୂଇଁର ବିସ୍ତୃତ ଶେଯ ! ଶେଯ ଆରପଟେ ଜଣେ ବୀଟପୁରୁଷ-ମୁଁ !

ମୁଁ ନିଜକୁ ଏଂଜଏ କରୁଛି ! ଯେମିତି: ମଲା ମା’କୁ ପୋତି ଆସି ମରସଲଟ୍ ମୈଥୁନ କରୁଛି ! ଜୀବନ୍ତ ନୀରୋଧ ଭିତରେ ସାପଟା ନିଜକୁ ମକୁଚି ମାକୁଚି ଆଉ ଡାଇସ୍ କରି ରଖି ନାହିଁ ! ହୋଇ ଯାଇଛି କେମିଷ୍ଟ୍ରି !



Source: Author, Digitized by PPRACHIN, SOA

ପି' ବ୍ରେଷ୍ଟକୁ ନ ମାପି ମାପୁଛି ବ୍ରା'ର କପ୍‌କୁ !

ତମେ କେବେ ପାପ କରିଛ, ପି' ? କେବେ ବା ପୁଣ୍ୟ କରିଛ ? ପବନରେ ବୃକ୍ଷର ଦୋଳନ ଦୋଳନ ନୁହେଁ, ବୃକ୍ଷର କାର୍ଯ୍ୟ ! ପି', ତମେ କି କାମ କରୁଛ ? କି କାମ ତମେ ଆଉ କରିବ ! ଶିକ୍ଷକ ଟ୍ରେନିଂ ସ୍କୁଲ୍ ସବୁ ବନ୍ଦ ହୋଇଗଲାଣି ! ସ୍କୁଲ ସବୁ ବନ୍ଦ କରିଦିଆ ଯିବ କେବେ ?

ଯେଉଁ ପାଠ ପଢ଼ିଲେ ପେଟ ପାଇଁ ଆୟ କରି ହୁଏ ନାହିଁ ଦୁଇ ମୁଠା ଭାତ; କାହିଁକି ରହିବ ସେ ସ୍କୁଲ୍ ଓ ସେ ପାଠ ?

ପି' ଏକ ପର୍ମେ ! ଷ୍ଟେଣ୍ଡଲଙ୍କ କଂସେଇଖାନା ! ତା'ର ରହିବା ଉଚିତ ମଣିଷଙ୍କଠୁ ଦୂରରେ ! ପି' ମୋନାଲିସା ଛବି ଚୋରେଇ ନେଇଥିବା ଇଟାଲୀର ଉଗ୍ରବାଦୀ ଯୁବକ 'ପେରୁଗିଆ' କିମ୍ୱା ନର୍ମାଲ୍ ମେଲରଙ୍କ 'ଆଡ଼ଭେଟାଇଜ୍ ଫର୍ ମାଇଁ ସେଲ୍‌ଫ'ର 'ଦି ପାଟ୍ରୋନ୍ ସେଣ୍ଟ' ଗଳ୍ପର 'ପାଇରଟ' ? ହୋ-ଇ-ପା-ରେ-ବି, ପ-ରୀ-କ୍ଷି-ତ ! ଏବେ ପୁନର୍ଜାତ !

ଡାଇସ୍‌ଟାକୁ ସାଉଁଳଉଛି !

ମୃତ ପିତାର ଅସ୍ଥି ଭିତରେ ଶକୁନିର ଆଜ୍ଞା କାର୍ଯ୍ୟ କରୁଛି !

ମକବୁଲ ଫିଦା ହୋସେନ ଆଜି ଢେମ୍ବଉଡ୍ ଓ ମେରିଲ୍ ଷ୍ଟିପ୍ ୱାଲ୍‌ଟରଙ୍କ ବହି ପଢୁଛି - 'ଦି ବ୍ରିଜ୍ ଅଫ୍', ମାଡିସନ୍ କଂଟ୍ରି ତାରି ପ୍ରଭାବରେ ଆଙ୍କିଛି ! ମାଧୁରୀ ଦୀକ୍ଷିତ୍ ସିରିଜ୍‌ରେ ଚିତ୍ରଟା ସ୍ଥାନ ପାଇଛି !

ମୁଁ ପି'କୁ ପଚାରିଲି ମାଧୁରୀ ଦୀକ୍ଷିତ୍ କିଏ ? କେତେ ତା ସ୍ତନର ଗୋଲେଇ ? ପ୍ରତି ମୈଥୁନରେ ତା'ର କେତେଥର ଅର୍ଗାଜମ୍ ହୁଏ; ସିଏ ହୋସେନ୍‌ର ଅଶୀତମ ଜନ୍ମଦିନର ଓପନିଂ.... ! ହୋସେନ୍ ଏବେ ୩୨୮୫୦ ସକାଳ ଦେଖିସାରିଲେଣି !

ସବୁବେଳେ ସିଏ ନଗ୍ନପାଦ ! ହୋଟେଲ୍ ଅଶୋକାରେ ତାଙ୍କ ଏକକ ଚିତ୍ର ପ୍ରଦର୍ଶନୀ ହେବ ! କାନ୍ଥ ସାରା ବିଛା ଯାଇଛି ଧାଡ଼ି ଧାଡ଼ି ଲମ୍ୱା କାଗଜ ! ଚିତ୍ରଫିତ୍ର କିଛି ନାହିଁ ! ଠାଏ ଲେଖା ଯାଇଛି 'ଶ୍ୱେତାମ୍ୱରୀ' - ତା' ଚିତ୍ର ପ୍ରଦର୍ଶନୀ !

ଓ, ଟେଂପ୍‌ଟେଡ୍ ବାର୍ଡ ! ଲେଟ୍ ମି ଜୟ ଆଣ୍ଡ୍ ଏଂଜୟ ୟୁ !

କେଉଁ ପର୍ଯ୍ୟନ୍ତ ତୁମକୁ ଗଣି ଆସେ ସଂଖ୍ୟାମାନ ? ମୁଁ ପି'କୁ କହିଲି, ଗଣିଚାଲ !



Source: Author, Digitized by PPRACHIN, SOA

ଏକ, ଉଣେଇଶ, ଅଣଚାଶ, ଅଣଷଠି-ଅନେଶତ; ଶେଷକୁ ପଡ଼ିବ ବିବିର ପଟ ? ତାସ୍‌ପରି ଜୀବନକୁ ଫେଣ୍ଟୁଛି !

ହାତରେ ରଂଗ କାଇଁ ? ତମେ ଏକ ଦରଆଉଜା କବାଟ !

ସ୍ତ୍ରୀ ସାମାଜିକ ରକ୍ଷଣାବେକ୍ଷଣା ସୂତ୍ରରେ ଲାଭ କରିଥିବା ଖଣ୍ଡେ ବୟସ୍କା ଟ୍ୟାକ୍ସି ! ତାକୁ ରୋଜଗାର ପାଇଁ ସେ ଷ୍ଟାଣ୍ଡକୁ ପଠାଇ ଦେଇଛି ! ଘରେ ଏକା ଏକା ! ସ୍ତ୍ରୀ ଠୁ ଅଧିକ ଭଲ ଲାଗେ ତାକୁ ତା' ଟଙ୍କା !

ଗୋଟିଏ ଟଙ୍କାକୁ ମୋଡ଼ି ତା' ଭିତରେ ତମାଖୁ ଭରି ଅଗ୍ନି ସଂଯୋଗ କରି ଟାଣୁଛି ! ଗୁଡ଼ାଏ ଆଲ୍‌ପିନ୍, ଚୂନା ଚୂନା କାଚ ଖଣ୍ଡ ଓ ବ୍ଲେଡ୍- ସେଗୁଡ଼ା ଧୂଆଁ ନୁହେଁ ! ଶୋଷି ନେଉଛି ପାଟି ବାଟେ ! କିଛିଟା ଅବଶୋଷ, କିଛିଟା ସେକ୍ସ ଓ କିଛି ଅବଦମିତ ପ୍ରବୃତ୍ତି ଭ୍ରୂଣ ହୋଇ ନଟୁପରି ତା' ଗର୍ଭ ଭିତରେ ଘୂରୁଛନ୍ତି ! ଘୂର୍ଣ୍ଣନରତ ନଟୁକୁ ସେ ପାଦରେ ମକଚି ପକାଉଛି ! ମକଚି ହୋଇ ଯାଉଛି ଜୋତା ତଳେ ଜୀବନ ! ପାପୁଲି ତଳେ ସ୍ତନ !! ଟିପ ତଳେ କ୍ଲିଟୋରିସ୍‌ର ବେତାମ ? ରୁବୀ ମିଶ୍ର ଜାଣେ ! ଗୁଡ଼ିଏ ଅଭ୍ୟସ୍ତ ଗପର ଶିକାର ହିଁ ନିଜେ ଈଶ୍ୱର !

ପାଠକର ପ୍ରସ୍ତୁତ ଉଦ୍ଦୀପନା ଏଠି ବଦଳୁନି ! କାରଣ ଲେଖକ ଦୁର୍ବଳ !

ଆଁଦ୍ରେଜିଦ୍‌ଙ୍କୁ ପଚାରିଛି ବୋରିଶ, ଟୋକାଗୁଡ଼ାଙ୍କୁ ନକଲି ମୁଦ୍ରାଟା ଦେଇ ତମେ ଠକିବ, ଆଉ କେତେ ଦିନ ? ବାବଦୁକତାକୁ ଛାଡ଼ି ପାରିବନିନା', ନ ଛାଡ଼ ! ସମସ୍ତ ଆର୍ଟ ଏକ ପ୍ରକାର ପ୍ରେପାଗଣ୍ଡା କିନ୍ତୁ ସମସ୍ତ ପ୍ରୋପାଗଣ୍ଡା ଆର୍ଟ ନୁହେଁ !

'କାଉଣ୍ଟର ଫିଟର୍ସ'ରେ ଆତ୍ମହତ୍ୟା କରିଦେଲା ବୋରିଶ ! ଆତ୍ମହତ୍ୟା କରିଥିଲା ଛଂଦା ! ଭାନ୍‌ଗୋଘ୍ ବି !

କର୍ଦ୍ଦମ ଭିତରେ ଗଳିଗଲା କାମ୍ୟୁଙ୍କ ଜୋତା ! ଡଷ୍ଟୟଭସ୍କିଙ୍କ ଇଂଜିନିୟର କିରିଲୋଭ୍ ଗତ ରାତ୍ରୀରେ ଠିକଣା କରିଛି ସିଏ କାହାକୁ ଖାତିର କରେନା, ଯଦି ଈଶ୍ୱର ନାହାନ୍ତି, କିରିଲୋଭ୍ ନିଜେ ଅଟେ ଈଶ୍ୱର ! ତେଣୁ କିରିଲୋଭ୍ ନିଜକୁ ହତ୍ୟା କରିବ ! ନିଜର ଭୀଷଣ ଅବାଧତାକୁ ସମର୍ଥନ କରିବାକୁ ସେ ଆତ୍ମହତ୍ୟା କରୁଛି ! ଈଶ୍ୱର ନାହାନ୍ତି, ଅନ୍ତତଃ ଚର୍ଚ୍ଚମାନ ନିଶ୍ଚୟ ତୋଳାଯାଉ, ସ୍ଥାପତ୍ୟ ବଂଚୁ ! କଥାଟା ଠାଏ ନୂଆ ସ୍ଥାନରେ ଅଟକିଛି ! An end which requires unjust means is not a just end



Source: Author, Digitized by PPRACHIN, SOA

ନିତ୍‌ସେ କହିଛନ୍ତି ! ତେଣୁ 'ୱେଦରିଂ ହାଇଟ୍‌ସ'ରେ ହିତକ୍ଲିଫ୍ ଈଶ୍ୱରଙ୍କଠୁଁ ଉର୍ଦ୍ଧ୍ୱରେ ରଖିଛି ତା' ପ୍ରେମକୁ ! ସିଏ ରାଜି ଅଛି ନରକକୁ ଯିବାକୁ ! ଯଦି ତାକୁ ରମଣ କରିବାକୁ ଆଣି ଦିଆଯାଇ ପାରେ ତା' ମନର ମଣିଷକୁ ! ଖାଲି ସେତିକି ନୁହେଁ, ତା ପାଇଁ ଯାତନା ସହ୍ୟ କରିବାକୁ ସିଏ ସ୍ୱୀକୃତ ! ଏପରିକି ତା' ସମଗ୍ର ଆୟୁଷ ତା' ପାଇଁ ଖର୍ଚ୍ଚକରି ଦେବାକୁ ମଧ୍ୟ ପ୍ରସ୍ତୁତ !

ମଣିଷ କି ଜିଦିଆ ହୋଇ ଯାଇଛି ?

କର୍ମ ମଣିଷକୁ ବଂଚାଇ ରଖେ ! ସମସ୍ତଙ୍କଠୁଁ ଅଲଗା କର୍ମ ! ହଂସ ମଧ୍ୟେ ବକ ଯଥା ! ତେଣୁ ପି' ଏବେ ଥୁଣ୍ଟା ହୋଇ ଯାଇଛି ! ତା' ଉପରେ ଏବେ ବନରକ୍ଷୀଙ୍କ ଆଖି ! କିଂତୁ ବନପାଳଙ୍କ ଦପ୍ତର ପରିସରରୁ ଚଂଦନ ଗଛ ଉଭେଇ ଯାଉଛି ! -

ପି. ଗୋଟିଏ ମୂଷା ! ନିଜ ସୁଖ ରୂପକ ଗାତ ଭିତରକୁ ଟାଣି ଆଣୁଛି ସମଗ୍ର ସଂସାରକୁ ! ପି' ଦେହ ସର୍ବସ୍ୱ ! ଦେହ କ୍ଳେଶକୁ ତା' ଭୟ ଅଧିକ ! ଦେହର ସୁଖ ହିଁ ତା' ସୁଖ ! ସୁଖ ପାଇଁ ଫାଉଷ୍ଟ୍‌ପରି ସିଏ ସଇତାନକୁ ବିକ୍ରୀ କରି ଦେଇଛି ତା' ଆତ୍ମୀଟିକକ ! ସଂସାରଟା ତା' ଆୟତ ! ତା' ଭୋଗବାଦୀ ତୃଷ୍ଣା ତୃପ୍ତ ଦେହର ଏକ ସଂପ୍ରସାରଣ–ଏଇ ଅନୁଭବ ତା'ର ସୁଖ ! ଏହାର ବିପରୀତ ଅନୁଭବ ନାମ ଦୁଃଖ ! ତା' ପାଇଁ ତା' ଜୀବନ ସ୍ତନପରି ଆକର୍ଷଣୀୟ ଓ ଫୁଲପରି ସୁନ୍ଦର ! ଅଫିମପରି ମିଳେ ସେଥିରୁ ଆନନ୍ଦ ! ବହୁ ଦିନରୁ ସାଇତା ପାଣିଗୁଡ଼ାକୁ ମନିପ୍ଲାଣ୍ଟ ବୋତଲରୁ ବାହାର କରିଦେଇ ନୂଆ ପାଣି ଭର୍ତ୍ତି କରି ଦେଲା ପି' ! ନୂଆ ପାଣି କି ସ୍ୱଚ୍ଛ ! ତତଃ ନ ବିଜୁଗୁପ୍‌ସତେ !

ବିଜୁଗୁପ୍‌ସାକୁ ଅପସାରିତ କରି ନେଇଛି ଆତ୍ମୀୟତା ! ସେ ଆତ୍ମୀୟତା ଅଛି ତ ତା' ପାଖରେ ? ଯଦି ଅଛି 'ହିଷ୍ଟ୍ରି ଅଫ୍ ଆର୍ଟସ୍'ରୁ ତୁର୍କୀ ହାରେମ୍ ବାଳିକା 'ଓଦାଲିସ୍କ୍ୟୁ' ଛବିଟି ଚିରି ନେଲା କାହିଁକି ? କାହିଁକି ହୋଲ୍ କଲା ସବୁ ନ୍ୟୁଡ୍ ଜଂଘ ସଂଧି ? ଫେଟିଷ୍ଟ୍ ?? ସୁଖ ପାଇଛି ? ପାଇଛି ଗୋଟିଏ ଅର୍ଗାଜମ୍? ନା' ଅଦ୍ଭୁତ ଏକ ରଂଗ ବୋଳି ହୋଇଯାଇଛି ଛବିଟିର ମୁହଁରେ ! ବୋଧେ କାମୁକତାର; ଅଶ୍ଳୀଳତାର? ସାର୍ତ୍ରେ ଲେଖିଛନ୍ତି– 'ଏଜ ଅଫ୍ ରିଜିନ୍' : ଚରିତ୍ର ମାଥ୍ୟୁଡିଲାଗୁଇ ! ଲୋକଟିକୁ ଜାଣନ୍ତି କେହି ? ସିଏ ଜଣେ ସ୍କୁଲ ମାଷ୍ଟର !

ଘୂରି ବୁଲିଛି ଅଠଚାଲିଶ ଘଣ୍ଟା ! ଦୀର୍ଘ ଦିନ ଦୁଇଟା ! ଦୁଇଟି ଦିନର ଦୁର୍ଗତିକୁ ଏସିଡ୍ ଦ୍ୱାରା ଧାତୁ ଫଳକରେ ଚିତ୍ରିଛି; ତା' ନିଜ ଟ୍ରାଜେଡ଼ି ! ଡି.ଏଚ୍.ଲରେନ୍ସ ବି ଥିଲେ



Source: Author, Digitized by PPRACHIN, SOA

ଜଣେ ପ୍ରାଥମିକ ଶିକ୍ଷକ ! ତା’ ପରେ ଲେଖିଲେ ସାହିତ୍ୟ ! ଛକିଲା ବହିତକ ! ରାଜକୋଷରେ ଟଙ୍କା ନିଅଣ୍ଟ; ବଢୁଛି ବେକାରୀ ତେଣୁ ବନ୍ଦ କରିଦିଆ ଗଲା ଓଡ଼ିଶାରେ ଶିକ୍ଷକ ତାଲିମ୍ ! ରାଜକୋଷ ଖାଲି; ମୂଷା ଆଉ କିଏ ? ଥରେ ବିଧାୟକ ହେଲେ ରୋଜଗାର କରିବା ଦରକାର ନ ଥାଏ ଆଉ ଅଣନାତି ଯାଏ !

ସମୟର ଅର୍ଥ କ’ଣ ମରସଲଟ୍ ?

‘ପୁରୋହିତ ଓ ଜଣେ ମୃତ ଲୋକ ମଧ୍ୟରେ ଚାଲିଛି ଡାଇଲଗ୍; କହନ୍ତି ଡି ସେଡ୍ ! ନେତା ଜାଣନ୍ତି, ସମୟର ଅନ୍ୟ ନାମ ସେକ୍ସ ! ବାଲେଶ୍ୱରରେ, ସମ୍ବଲପୁରରେ, ବାରଙ୍ଗରେ ଓ କେନ୍ଦ୍ରାପଡ଼ାରେ – ସବୁଠି ! ଟ୍ରେଡ୍ ଟାୱାର ଖୋଲିଛି ! ଗୋଟାକୁ ଭାଙ୍ଗିଦେଇ ଲାଡ଼େନ୍ ଲୁଚିଛି ! ଏବେ ଅଂସଖ୍ୟ ! ଏହାକୁ ଭାଙ୍ଗିବାକୁ ଏତେ ଲାଡେନ୍ (ଅଫିମ ଚାଷୀ/ଆତଙ୍କବାଦୀ ନେତା) କାହାନ୍ତି ?

ପି’ ସଫେଇ ଦେଲା, ‘ମୁଁ ମୁଁ କିଛି ନୁହେଁ, କି ମୋର କିଛି ନାହିଁ !’ ଦଶବର୍ଷ ପ୍ରଶାସନିକ ସେବାରତ ମୋ ଆୟ ବହିର୍ଭୁତ ସଂପତ୍ତିର ମୂଲ୍ୟ ମାତ୍ର ନବେ ଲକ୍ଷ ! ଏହାବାଦେ ଚାରୋଟି ସହରରେ ୧୪ଟି ଲକର ଅଛି ମୋର ଭିନ୍ନ ଭିନ୍ନ ନାମରେ ! ସେଥିରୁ ଭିଜିଲାନ୍ସ ସିଲ୍ କରିଛି ତିନୋଟି ! ବାକି ସବୁ ସିକ୍ରେଟ ଫଟୀ !

ଖାଲି ଆକ୍ସନ୍ ପ୍ରମାଣିତ କରେ ଲୋକଟି ଜୀବନ୍ତ ! ତା ନହେଲେ ଏଠି ସମସ୍ତେ ମୃତ !

ଏଠି ସମସ୍ତେ ଅସୁସ୍ଥ ! ନିଜେ ଡାକ୍ତର ବି ! ତାଙ୍କୁ ପ୍ଲେଗ୍ ! ପ୍ଲେ........ଗ୍ !

ଡକ୍ଟର ରିଉକ୍ସ : ଓରାନ୍ ସହର – ନିଜ ଦ୍ୱାର ଦେଶରେ ମରି ପଡ଼ିଛି ଗୋଟିଏ ମୂଷା ! ପ୍ରତିଷେଧକ ବ୍ୟବସ୍ଥା ପାଇଁ ସହର କର୍ତ୍ତୃପକ୍ଷଙ୍କୁ ଜଣାଇଲେ ବି କାହାକୁ ଶୁଣାଯାଇ ନଥିଲା ! ମହାମାରୀର ଶିକାର ଓରାନ୍ ସହର ସମଗ୍ର ପୃଥିବୀରୁ ବିଛିନ୍ନ ହୋଇଗଲା ! ଯେଉଁ ଦିନ ଗୋଦାମରୁ ସବୁ ମଦ ସମାପ୍ତ ଓ ସବୁ ଚଳଚ୍ଚିତ୍ର ପ୍ରେକ୍ଷାଳୟରେ ପୁରୁଣା ହୋଇଗଲା; ସେଇ ଦିନ ଲୋକଙ୍କ ଦୃଷ୍ଟି ମହାମାରୀ ଉପରେ ପଡିଲା ! ସେତେବେଳକୁ ଟ୍ରେନ୍ ଆଉ ଷ୍ଟେସନ୍‌ରେ ନଥିଲା !

ବଞ୍ଚିବା ଖୁବ୍ ମଧୁର ଅଥଚ ଜୀବନରୁ କିଛି ମାନେ ମିଳେନା ! ଲାଇଫ ଇଜ୍ ଏ ୱାକିଂ ସ୍ୟାଡୋ ! ସିଗ୍ନି ଫାଇ ନଥିଂ !



Source: Author, Digitized by PPRACHIN, SOA

ଯାହା ଉଦ୍ଦେଶ୍ୟ ରହିତ ତାହା ଉଦ୍ଭଟ; କାଫ୍‌କାଙ୍କୁ ବୁଝାଉଥିଲେ ଆଇନସ୍ପୋ !

ପୃଥିବୀରେ ଜୀବନ ହେଉଛି ଏକ ଗୋଲକ ଧନ୍ଦା; ଏଥିରେ ଥରେ ଫସିଲେ ମାଛଟି ମଲା !

ନିଜ ବିଚାର ପି' ପହଞ୍ଚାଇ ପାରୁ ନାହିଁ ଅନ୍ୟ ପାଖରେ ! ତା ପରିବେଶ, ଚିନ୍ତାଧାରା ଓ ବିଚାର ସବୁ ଅର୍ଥହୀନ ! ଲଗାମହୀନ ! ତେଣୁ ସେ ଉଦ୍ଭଟ: ଘୋଷଣା କଲେ ସାମୁଏଲ ବେକେଟ୍: ନଥିଂ ଇଜ୍ ନଟ୍ ମୋର୍ ରିଏଲ୍ ଦେନ୍ ନଥିଂ !

ପି' ରୁବୀ ମିଶ୍ରକୁ ମନେ ପକାଇଲା !

ଡକ୍ଟର ରିଉକ୍ସ ନିଜ ସ୍ତ୍ରୀକୁ ଗୋଟିଏ ସାନେଟୋରିୟମକୁ ଚିକିତ୍ସା ପାଇଁ ନେଇଥିଲେ ! ପ୍ଲେଗ ଆକ୍ରମଣ ଯୋଗୁ ଆଉ ତାକୁ ଯାଇ ଭେଟି ପାରି ନଥିଲେ ! ମରି ଯାଇଥିଲା ସ୍ତ୍ରୀଟି ! ସାମ୍ବାଦିକ ରାମ୍ବର୍ଟ ପ୍ୟାରିସ୍‌ରୁ ଓରାନ୍ ଆସି ନିଜ ପ୍ରେମିକାଠୁ ହୋଇଯାଇଥିଲେ ବିଚ୍ଛିନ୍ନ ! ଏଇ ପ୍ଲେଗ୍ ଲାଗି !

ଓରାନ୍‌ବାସୀଙ୍କ ପାପର ଫଳସ୍ୱରୂପ ଈଶ୍ୱର ମହାମାରୀକୁ ପଠେଇଛନ୍ତି: ଫାଦର ପାନେଲୋକ୍ସ ସୂଚେଇଛନ୍ତି ! ଧର୍ମ ପଥକୁ ଆସ !

ମହାବାତ୍ୟାକୁ କିଏ ପଠାଇଥିଲେ ଓଡ଼ିଶାକୁ, ମିଷ୍ଟର କାମ୍ୟୁ ?

ପି. ଆଖି ଭିତରେ ଚକ୍ ଚକ୍ ହେଲା ପ୍ରଶ୍ନବାଚୀ !

ପି' ମିନ୍ନ ପବ୍ଲିକ୍ ଟ୍ରାଏଲ୍ ବ୍ୟାଖ୍ୟା କରୁଥିବା କୋଷ୍ଟେଲରଙ୍କ 'ଇଭାନୋଭ' କହିଲା ଜଣେ ଦୁର୍ନୀତିଗ୍ରସ୍ତ ବ୍ୟକ୍ତି ! ଭୁବନେଶ୍ୱରରେ ପାୱାର୍ ଅଫ୍ ଆର୍ଟର୍ଣ୍ଣି ଦ୍ୱାରା ଯେଉଁ ମାନଙ୍କର ନୂଆ ନୂଆ ପ୍ଲଟ୍ ଓ ଫ୍ଲାଟ୍ ବଢୁଛି ! ସହରର ସ୍ତନପରି ରଂଗୀନ୍ କୋଠାମାନ ମୁଣ୍ଡ ଟେକୁଛି !

ମଣିଷ ଟିକିଏ ସୁଖ ପାଇବାକୁ ଉଦ୍ୟମ କରିବା କଦାପି ଦୋଷାବହ ନୁହେଁ, ଡକ୍ଟର ରିଉକ୍ସ ରାମ୍ବର୍ଟଙ୍କୁ ବୁଝାଇଛନ୍ତି !

ମେରୀ ମରସଲଟଙ୍କୁ ପ୍ରଶ୍ନ କରିଚି– 'ତମେ ମତେ ଭଲ ପାଅ ?

ମରସଲଟ କହିଛି– 'ଭଲ ପାଇବା କ'ଣ ମୁଁ ଜାଣେ ନାହିଁ, ତେବେ ମୋର ଅନୁମାନ ଯେ ମୁଁ ଭଲ ପାଏ ନାହିଁ !



Source: Author, Digitized by PPRACHIN, SOA

'ଯଦି ତୁମର ଅନୁଭବ ଏପରି ତେବେ ମତେ କାହିଁକି ବିବାହ କରିବ ? ପଚାରିଛି ମେରୀ !

'ବିବାହ ଯଦି ମତେ ଆନନ୍ଦ ଦେବ ତେବେ ଶୀଘ୍ର ଆମେ ବିବାହ ହୋଇଯିବା ! ତା ନ ହେଲେ ମୋ ପାଇଁ ବିବାହର କୌଣସି ମାନେ ନାହିଁ !'

'ଯଦି ମୋ ବ୍ୟତୀତ ଅନ୍ୟ କୌଣସି ଝିଅ ତୁମକୁ ବିବାହ ପ୍ରସ୍ତାବ ଦିଏ ତେବେ ତୁମେ ରାଜି ହୋଇଯିବ ?'

'ନିଶ୍ଚୟ' କହିଛି ମରସଲଟ ! ପି. ଆଖି ଆଗେ ଜଳଜଳ ହୋଇ ଦେଖାଯାଇଛି ଦିଆ ଓ ନିଆ ଯାଉଥିବା ଯୌତୁକ !

'କ୍ରସ ପରପୋଜ୍' ନାଟକ ଚାଲିଛି !

ନିଜ ହୋଟେଲରେ ରହୁଥିବା ଯାତ୍ରୀଙ୍କୁ ମା ଓ ଝିଅ ରାତ୍ରୀ ଭୋଜନରେ ବିଷଦେଇ ମାରନ୍ତି !

ସକାଳକୁ ମୃତର ସଂପତ୍ତି ହୋଇଯାଇଥାଏ ସେମାନଙ୍କ ଅଧିକୃତ ! କେତେ ଦିନ ଚାଲିବ ଅନ୍ୟାୟର ଏ ନାଟକ ? ଶେଷକୁ ଆସିଛି ଦିନେ ଅଚିହ୍ନା ଯାତ୍ରୀ ରୂପେ ବୃଦ୍ଧାର ପୁତ୍ର ! ସକାଳକୁ ମୃତ ପୁତ୍ରକୁ ଚିହ୍ନି ବୃଦ୍ଧା ନଈକୁ ଡେଇଁ ଆତ୍ମହତ୍ୟା କରିଛି !

ପି' ଉପଲବ୍ଧି କରୁଛି- ଓଡ଼ିଶାରେ ସମାଜ କୃଷି ଭିତ୍ତିକ ! ସାମନ୍ତ ତଂନ୍ତ୍ରୀ ଅନାପେକ୍ଷିକ ଓଡ଼ିଆ ଲେଖକଙ୍କ ସରଳ ଦୃଷ୍ଟି ! ତାଙ୍କ ଚରିତ୍ର ଦୁଇ ଥାକରେ ବିଭକ୍ତ ! ଭଲ ଓ ଖରାପ ! ତିରିଶ ହଜାର ଦେଇ କିଣିବାକୁ ମିଳେ ଏଠି ଚାକିରୀ, ତିରିଶ ହଜାର ବି ବର୍ଷକରେ ମିଳିଥାଏ ଉପୁରି ! ଗାଁ ରେ ଚାଷବାସ ! ଏଠି ମୋଟେ ନାହିଁ କମା, ଖାଲି ପୂର୍ଣ୍ଣଛେଦ ! ତିରିଶ ବର୍ଷ ପରେ ପୁଣି ପେନ୍‌ସନ୍ ! ସହରରୁ ମିଳେ ଘରଭଡ଼ା !

ବନ୍ଧା ଘୋଡ଼ା ଘାସଖାଏ ! ଏଲ.ଆଇ.ସି, ପିୟରଲେସ୍ ଏଜେଣ୍ଟ କିମ୍ବା ଟିକସ୍ ପରାମର୍ଶଦାତା କିମ୍ବା ଟ୍ରାଭେଲ୍‌ସ କିମ୍ବା ଟେଲିଫୋନ୍ ବୁଥିଟିଏ ଖୋଲି ବୁଢ଼ା ବସିଯାଏ !

ସେଗୁଡ଼ା ମଣିଷ ? ପି'କୁ ଦେଖାଯାଏ ଜୀବନ୍ତପରି ଦେଖାଯାଉଥିବା ସେମାନେ ମୃତ !

ମରସଲ୍‌ଟ ମଧ୍ୟ ଅନୁଭବ କରିଛି ପୃଥିବୀରେ ମୁର୍ଦ୍ଦାରପରି ବହୁତ ଲୋକ ବଂଚନ୍ତି ! ସେମାନଙ୍କ ଠାରୁ ସେ ଶ୍ରେଷ୍ଠ !



Source: Author, Digitized by PPRACHIN, SOA

ସିସିଫସ୍ ଅବିଶ୍ରାନ୍ତ ଭାବେ ନିଜ କାର୍ଯ୍ୟରେ ଲାଗିଛି ! ମନରେ ତା'ର ଚୁଣ୍ଟାଚୁଣ୍ଟି ଆକୁଳତା ! ଆବେଗ ଢେଉ ମାରୁଛି ! ଅଥଚ ଅସଫଳ ଯାତନାର ଶତଶତ ବିଷାକ୍ତ ତୀର ଆତ୍ମାକୁ ତା'ର କଣା କରି ଚାଲିଛି ! ସରକାରୀ ଚାକିରୀ ନାଇଁ, ପ୍ରେମ ନାଇଁ, ଘର ନାଇଁ, ପଛକୁ ସାହାସ ଦେବାକୁ ବୀମାଟିଏ ବି କାହିଁ !

ପି' ଅନେଇଚି କାମ୍ୟୁଙ୍କ ଫଟୋକୁ ! ଆଙ୍କିଚି ହୋସେନ ? ନା ସିଏ ନିଜେ !

'ସଚେତନ ମଣିଷ ଉଭଟ; ଜ୍ଞାନ ଓ ବୁଦ୍ଧିକୁ ସେ ନୈରାଶ୍ୟ ମଧ୍ୟରେ ଜାବୁଡ଼ିଥାଏ'- କହିଲେ 'ନସିଆ' ଲେଖୁ ଲେଖୁ ସାର୍ତ୍ରେ ! ପି' ସେଇଥିପାଇଁ ନୀରୋଧ ଭିତରେ ଡାଇସ୍‌ଟାକୁ ପୂରାଇ ଗାଧୁଆ କୁଣ୍ଡରେ ବନଶୀ ଖେଳାଇବାପରି ଚେନାଏ ସୁଖ ଦଳି ମକଚି ଛାତି ଭିତରୁ ନିଗାଡୁଛି !

ରୁବୀମିଶ୍ରର ବ୍ରେଷ୍ଟକୁ ନ ମାପି ତା' ବ୍ରା'ର କପ୍‌କୁ ମାପୁଛି !

ଆଉ ରୁବୀମିଶ୍ର: ରିଭଲ୍ବର ପତ୍ନୀ କିମ୍ବା ରାମ୍ପଟର ପ୍ରେମିକାପରି ପି'କୁ ପୀୟୂଷ ଦେଇଛି ! କିନ୍ତୁ ପତ୍ନୀତ୍ୱ ଦେଇନି ! ପ୍ରେମିକା ଶବ୍ଦର ଅର୍ଥ କ'ଣ ନୁହେଁ ଗାଧୁଆ କୁଣ୍ଡରେ ବନଶୀ ଖେଳାଇବା ? ଯେଉଁଠି ଅପ୍ରାପ୍ତିର ନିଶ୍ଚିତତା ଥାଏ ଓ ଥାଏ ଆଶାର ବୁନ୍ଦାଏ ଢଳଢଳ ଜଳ ପଦ୍ମ ପତ୍ର ଉପରେ !

ପି' ଏବେ ବି ସଂଖ୍ୟାମାନଙ୍କୁ ଗଣୁଛି !

ତେଣୁ ହିଷ୍ଟ୍ରି ଅଫ୍ ଆର୍ଟସ୍‌ରୁ 'ଓଦାଲିସ୍କ୍ୟୁ' ଛବିଟି ଚିରି ନେଇଛି ! ତୁର୍କୀ ହାରେମ ବାଳିକା ରୁବୀମିଶ୍ରପରି ତାକୁ ସୋରଡ଼ାଏ ପୀୟୂଷ ପିଆଇଛି ? ମରସଲଟପରି ମିଳିଛି ଚେନାଏ ଆନନ୍ଦ, ନଗ୍ନ ନାରୀଛବି, ଜଂଘ ସନ୍ଧି ବହିସାରା ଫୋଡ଼ କରିବାରେ ?

ଖବର କାଗଜ ଲେଖିଚି ପ୍ରତିରକ୍ଷା ବିଭାଗ ଶାଖା ନିର୍ଦ୍ଦେଶକ ଭାରତ ଭୂଷଣ ଦୁଷ୍ପ୍ରାପ୍ୟ ଏନ୍‌ସାଇକ୍ଲୋପିଡ଼ିଆ ଭିତରୁ ନ୍ୟୁଡ଼ ଚୋରି କଲା ବେଳେ କଲିକତା ନ୍ୟାସନାଲ ଲାଇବ୍ରେରୀ ଭିତରେ ଆଲିପୁର ପୁଲିସ ହାତରେ ଧରା ପଡ଼ିଛନ୍ତି !

ଲୋକଟି ଫେଟିଷ୍ଟ ? ଜେମ୍ସ ଜଏସ୍‌ଙ୍କପରି ପକେଟରେ ମହିଳା ଅନ୍ତର୍ବସ୍ତ୍ରଟିଏ ଲୁଚାଇ ରଖିବା ଭଳି ମାନସିକ ରୋଗ ଅଛି ?

ତା'ନହେଲେ ମଣିଷର ସ୍ୱପ୍ନକୁ ପି' ଚୋରୀ କଲା କିମିତି ? ପେରୁଗିଆ ଲୁଭ୍ରେ ଚିତ୍ରଶାଳାରୁ ମୋନାଲିସା ଛବିଟି ଚୋରାଇ ନେଇଥିଲା ଯେମିତି ? ରୁବୀ ମିଶ୍ର ତାକୁ ପ୍ରେମ ଦେଲାନି !



Source: Author, Digitized by PPRACHIN, SOA

ଦେବ ଯେ କିମିତି ? ତା' ଠି ପ୍ରେମ ଥିଲେ ଟି !

ବୁଦ୍ଧ ଦେବ, ଆପଣଙ୍କ ହାତ ଥରୁଛି !!

ଈଶ୍ୱର କିଏ ? .... ମଣିଷ କିଏ ? ଗୋଟିଏ ଦୁର୍ନିତୀଗ୍ରସ୍ତ ଥିଓରି ?

କେତେ ଉତ୍କୋଚ ଦେଇ ସ୍ୱୀକୃତ କରାଇ ନେଲେ ଥେସିସ୍ ଦାରୁଇନ୍ ?

ଦି ଗେମ୍ ଅଫ୍ ଲଭ୍ ! ସଂପର୍କ ଓ ସହବାସର ଅଭ୍ୟାସ- ଶୋଭା ଦେଙ୍କ ଉପନ୍ୟାସ !

ପି' ଚାରି ପାଖ !

ପି' ଚାରିପାଖ କମ୍ପ୍ୟୁଟର ମନିଟର୍ ! କଳାକଳା ବୋତାମ ଧାଡ଼ି ଧାଡ଼ି ! ଶୋଭାଦେଙ୍କ ନାୟିକାଙ୍କ ବକ୍ଷ ମୁଣ୍ଡି ! My only books / were women's looks : ନାତାଲୀବାର୍ଣ୍ଣି ଯୁବତୀ କବି, ତାଙ୍କ ଲିଟେରେଚର୍ ସେଲୁନ୍‌ରେ ଆନାତୋଲା ଫ୍ରାନ୍ସ, ଏଜରା ପାଉଣ୍ଡ, ଆଁନ୍ଦ୍ରେ ଜିଦ୍ ଓ ଜଟ୍ରୁଡ୍ ଷ୍ଟୋନ୍ କାହାକୁ ଯେ ଆଣି ନ ଦେଇଛନ୍ତି ନିଜ ଲୁଚୁକାଳିର ଛବି ! ବାଣ୍ଟିଦେଲେ ପ୍ରେମ କ'ଣ ସରିଯାଏ ?

'ମାତାହାରି' ମାଳୟର ଜଣେ ଚଉଦବର୍ଷିୟା ମନ୍ଦିରର ନର୍ତ୍ତକୀଠୁ ଜନ୍ମିତ କନ୍ୟା ! ଝିଅକୁ ଜନ୍ମ ଦେଇ ମରି ଯାଇଥିଲା ମା ! ତେର ବର୍ଷ ବୟସରେ ମହାପ୍ରଭୁ 'ଶିବ'ଙ୍କ ସାମ୍ନାରେ ମାତାହାରି ଲଙ୍ଗଳା ହୋଇ ନାଚେ ! ଗୋଟିଏ ରାତି ସମ୍ବନ୍ଧ ପାଇଁ ସାତ ହଜାର ପାଞ୍ଚଶତ ପାଉଣ୍ଡ ମାଗେ ! ମାଡ୍ରିଡରେ ଲଙ୍ଗଳା ହୋଇ ସେ ବସିଛି କାଉଚ ଉପରେ ତାକୁ କରାଗଲା ଆରେଷ୍ଟ୍ !

'ଲୋକେ ମତେ ଦେଖିବାକୁ ଆସନ୍ତି କାରଣ ମୁଁ ପ୍ରଥମ ମହିଳା ଯିଏ ନିଜକୁ ଉଲଗ୍ନ କରି ସାହାସର ସହିତ ଦେଖାଇ ପାରେ ଜନସାଧାରଣଙ୍କୁ !

ତୁମେ ପାପ କରିଚ ? ପଚାରିଲା ସୈନିକ ମୁଖ୍ୟ !

ସିଏ ଅନୁତ୍ତରିତ ! ତାକୁ କ୍ରୋଧରେ ଗୁଳିମାରି ଦେଲେ ଦଳେ ସୈନିକ, ଅଗଷ୍ଟ ସାତ ତାରିଖ ଅଠର ଶହ ଛ'ସ୍ତରୀରେ ଜନ୍ମିତ ଡେଙ୍ଗୀଶ୍ୟାମଳୀ ଭେଲଭେଟ ଆଖିର ଏହି ସୂର୍ଯ୍ୟଟି ଅସ୍ତ ଯାଇଥିଲା ଅକ୍ଟୋବର ପନ୍ଦର ଉଣେଇଶ ଶହ ସତର ମସିହା ଦିନଠି !

୧୯୬୨ ଅପ୍ରେଲ୍ ୫ ତାରିଖ ! ହଲିଉଡ୍ ଅଭିନେତ୍ରୀ ମାରିଲୀନ ମନରୋ ବୁଜି ଦେଲେ ଆଖି ! ହତ୍ୟା କି ଆତ୍ମହତ୍ୟା କିଛି ଜଣା ପଡ଼ିଲାନି ! କିନ୍ତୁ ଗୋଟିଏ କଥା ଚାରିଆଡୁ ଶୁଣାଗଲା 'ଲଭ୍ ଗଡେସ୍ ୱାଜ ଡେଡ୍ ଆଇରନିକାଲି ଫର୍ ଲ୍ୟାକ୍ ଅଫ୍ ଲଭ୍' !



Source: Author, Digitized by PPRACHIN, SOA

ନର୍ମାନ୍ ମେଲର ବିଖ୍ୟାତ ଆଧୁନିକ ଗଦ୍ୟ ଲେଖକ ଲେଖିଛନ୍ତି ତା' ଜୀବନୀ ! ୧୯୪୦ ପରେ ପ୍ରତ୍ୟୁସର ଜୋ ସେଙ୍କ୍ ତାକୁ ପ୍ରତିଦିନ ନିଜ ଘରକୁ କିମ୍ବା ଅଫିସକୁ ନିମନ୍ତ୍ରଣ କରନ୍ତି ! ପାପୁଲିର ଲଫାପାରେ ତା' ସ୍ତନ ହଳକୁ ସାଇତି ରଖନ୍ତି ସତୁରି ବର୍ଷ ବୟସ୍କ ସେଙ୍କ୍ ! ଗପନ୍ତି ଘଣ୍ଟା ଘଣ୍ଟା ନିଜ ପଛ ଜୀବନ କଥା ! ମାରିଲିନ୍ ମନ୍‌ରୋ ପାଟି ଭିତରେ ପୂରାଇ ଥାଏ କେବଳ ଗୋଟିଏ କଥା- ମହମବତୀପରି ଚିକ୍‌କଣ ପାଚିଲା କଦଳୀପରି ପୀତ ଗୁରୁଗୁରୁ କେଇ ଆଙ୍ଗୁଳ ଦୂଷିତ ସତ୍ୟ ! ସେକ୍ସ ନୁହେଁ, ଗୋଲ ହୋଇ ମୋଡ଼ି ହୋଇଥିବା ଡଲାର୍‌ର ଗୋଟିଏ ବଣ୍ଡଲ୍ !

ମଧୁ କ୍ଷରନ୍ତି ?.... ସିନ୍ଧୁ ତମେ ଦେଖିଚ ମ୍ୟାଡମ୍ ? କାସାନୋଭାପରି ତମେ ଲେଖୁଛ ଚାରିହଜାର ପାଞ୍ଚଶତ ପଇଁଚାଳିଶି ପୃଷ୍ଠାର ସମ୍ଭୋଗ ? ଲେଖୁଚ ନିଜ [illegible] ସେଥିରେ ଅଛି କ'ଣ ? ମୁକ୍ତି ନା ତୃପ୍ତି ? ଫାଦର୍ ପାନେଲୋକ୍ସ ଡାକ୍ତର ରିଭକ୍ସକୁ କହିଛନ୍ତି ଆପଣ ମୁକ୍ତି ପାଇଁ କାର୍ଯ୍ୟ କରୁଛନ୍ତି ! ଆହେ କେଉଁଠି ମୁକ୍ତି ?

ରଷୋଙ୍କୁ କହିଥିଲା ଗଣିକା ଜୁଲିଟା: Leave the ladies alone and go and study mathematics; ନାରୀ, 'ଏ ଡିଭାଇନ୍ ବିଙ୍ଗ୍' କାହିଁକି ଗଣିକା ହୋଇଛି ? ନିଶ୍ଚୟ ତା'ଠି କିଛି ତୃଟି ରହିଯାଇଛି ! ଠିକ୍ ସେଇ ତୃଟି ପି'ଠି !!

ପି' ନିଜ ଜିନ୍ କମ୍ପ୍ୟୁଟରରେ ପୂରାଇଲା !

ବୋତାମ ପରେ ବୋତାମ, ଗୋଟିଏ ଟେଷ୍ଟ ଟିୟୁବ୍‌ରୁ ଆଉ ଗୋଟିଏ ଟେଷ୍ଟ ଟିୟୁବ୍, ପରୀକ୍ଷା ପରେ ପରୀକ୍ଷା, ତା ଚଷମା କାଚରେ କେବଳ ଅନ୍ୱେଷଣ ବୋଳି ହୋଇ ଗଲା !

ଜିନ୍‌ରୁ ତା' ଅତୀତକୁ ଖୋଜିହେଲା !

ମିଳିଗଲା ଇତିହାସ, ମିଳିଗଲା......ଆରେ ଇଏତ ନୃତତ୍ତ୍ୱ ?

ମହାରାଜା ପରୀକ୍ଷିତ ଓ ତା' ନିଜ ଜିନ୍ ଏକ, ତେବେ....ତେବେ ସିଏ ୟୁଲିସିସର ସୂର୍ଯ୍ୟବଂଶୀ ହିରୋ ଷ୍ଟିଫେନ୍ ଡିଡିଲସ୍ ତ ?

ବାଃ, ବାଃ.....ମନିଟର୍ ଭିତରେ ଅଛି ଆଉ କି ଦୃଶ୍ୟ ? ପୁଣି ଚିପିଲା ବୋତାମ !

ଓଲଟିଲା ଡାଏରୀ ଫର୍ଦ୍ଦ ! ପି' ପଢୁଛି ଇ-ବହି ! ମାଇକ୍ରୋସଫ୍‌ଟରେ ଗୋଟିଏ ଇଲୋକ୍‌ଟ୍ରୋନିକ୍ ଗ୍ରନ୍ଥ ! ପ୍ରତି ମିନିଟ୍‌ରେ ସତେଇଶ ହଜାର ଶବ୍ଦ ଉନ୍ମୋଚିତ କରୁଛି ତା ନିଜ ଅତୀତ ?



Source: Author, Digitized by PPRACHIN, SOA

'ଲେଟର୍ସ ଟୁ ଫେଲିସ୍' ଫ୍ରାଂଜ୍ କାଫ୍‌କା, ଫେଲିସ୍‌କୁ ଲେଖିଚି ଚିଠି !

'ଫେଲିସ୍ ମୁଁ ତୁମରି, ଫେଲିସ୍ ମୁଁ ତୁମରି,

ତମେ କେଉଁଠି ଏବେ ଅଛ ମୋ ହୃଦୟ ? ପତ୍ର ପାଇ ପତ୍ର ଦବ ! ମୋର ମନେପଡୁଛି ତମ ମୋ ଭେଟର ଅନ୍ତିମ କ୍ଷଣ !

ଫେଲିସ୍ ତୁମେ ମୋ ପ୍ରାଣ !'

ଏମିତି ଚିଠିଟିଏ କେଉଁ ଲେଖିକା ତା' ମନର ମଣିଷଠୁ ପାଇଛି ? ଫେଲିସ୍ ହେସ୍‌ଙ୍କ ସିଦ୍ଧାର୍ଥ ପଢ଼ି ଭାରତ ପଳାଇ ଆସିଛି ! ତା ଅଜ୍ଞାତରେ କାଫ୍‌କାଙ୍କ ଭ୍ରୁଣଟିଏ ତା ଜରାୟୁରେ ଡାଳ ମେଲୁଛି !

ଯୋଶେଫ କେ ? ତାକୁ 'ଜ' ବୋଲି ସରୋଜ ମହାନ୍ତି, ଥରେ ଓଡ଼ିଶା ବିଧାନ ସଭା ପାଇଁ ହୋଇଥିବା ପରାଜିତ ପ୍ରାର୍ଥୀ, ତାକୁ ନାଁ ଦେଇ ପାଳିଛନ୍ତି ! ଛୁଆ ଓ ବିଡ଼ାଏ ନୋଟ୍ ସରୋଜ ବାବୁଙ୍କ ମୁଠାରେ ଧରାଇ ଦେଇ ଫେଲିସ୍ ନିରୁଦ୍ଦିଷ୍ଟ ହୋଇଛି !

ଆଉ କାଫ୍‌କା ? ମହାନ ଦୂରଦ୍ରଷ୍ଟା ଲେଖକ, ଗୋଟିଏ ଟିଣ ଟ୍ରଙ୍କରେ ପାଣ୍ଡୁଲିପିତକ ପୂରାଇ ବନ୍ଧୁ ଫୋର୍ଡଙ୍କୁ ଲେଖି ଦେଲେ ଇଚ୍ଛାପତ୍ର- 'ମୋ ଅନ୍ତେ ତୁମେ ଏ ଖାତାଗୁଡ଼ା ଜାଳିଦେବ !'

ଆତ୍ମହତ୍ୟା କଲେ କାଫ୍‌କା !

ଭାନଗୋଘ ନିଜ ଗଳାରେ ବନ୍ଧୁକ ବାରେଲ ଲଗାଇ ଗୋଡ଼ବୁଢ଼ା ଆଙ୍ଗୁଠିରେ ଟ୍ରିଗାର୍ ଦବେଇ କରିଥିଲେ ଆତ୍ମହତ୍ୟା !! ଏ ପୃଥିବୀ ତାଙ୍କର ଦରକାର ନାହିଁ ! ଦରକାର ନାହିଁ ମଲା ମଣିଷମାନଙ୍କ ସମାଜରେ ଗୋଟାଏ ଜୀବନ୍ତ ଖ୍ରୀଷ୍ଟର ଶାଣିତ ଆବିର୍ଭାବ ! ଜଣେ କାଳଜୟୀ ଲେଖକ ଦଳେ ମଲା ଘୁଷୁରୀଙ୍କ ଭିତରେ କାହିଁକି ବଂଚିବ ? କ'ଣ ତାକୁ ଏଠୁ ମିଳିବ ?

ଯେତେବେଳେ ମିଳିବ, ସିଏ ସମୟର ନଈ ପାର ହୋଇ ଯାଇଥିବ ! ତା'ର ଆଉ କ'ଣ ହେବ ? ଆରେ ଆରେ ଆରେ......ଜ'ର ଜିନ୍ ସହିତ ମିଶି ଯାଉଛି ପି'ର ଜିନ୍ ! ତେବେ ...ତେବେ....ତେବେ ଆଉ କ'ଣ ପି' 'ଜ'ର ପୁଅ ! ନା' ଜ' ପି'ର ପୁଅ ?

ଜ'ର ଅନ୍ୟ ସଂପର୍କମାନ ଖୋଜିଲା ପି' ! ବଖରାରେ କଂପ୍ୟୁଟର୍ ମନିଟର୍‌ମାନ ଠୁଳ ହୋଇଛନ୍ତି ! ସବୁ ରେକର୍ଡ କରୁଛି ଗୋଟିଏ ରୋବର୍ଟ ! ସବୁ କମ୍ପ୍ୟୁଟରର ସିଏ ଡାଟା ବ୍ୟାଙ୍କ୍ ! ୧, ୯, ୧୯, ୨୯, ୩୯, ୪୯-ପି' ଗଣି ଚାଲିଚି !



Source: Author, Digitized by PPRACHIN, SOA

ମନିଟରରେ ଏଥର ଦେଖାଗଲା ଜୁରିକ୍ ୟୁନିଭରସିଟି ! ସ୍ପେସିଆଲ୍ ଥିଓରି ଅଫ୍ ରିଲେଟିଭିଟିର ଗବେଷକ ଆଇନଷ୍ଟାଇନ ନିଜ ଗଣିତ ଛାତ୍ରୀ ମିଲେଭା ମାରିକଙ୍କ ସହିତ ଦାମ୍ପତ୍ୟ ତିଆରି କରୁଛନ୍ତି ! ଶେଯରେ ମିଲେଭା ଆଇନଷ୍ଟାଇନ୍‌ଙ୍କ ପ୍ରତି ଚୋଟକୁ ଗଣୁଛି ! ଫିକ୍ କିନି ହସି ଦେଇ ଟିକି ଥଟ୍ଟାଟିଏ କରୁଛି !

ବାଃ ଛୋଟ ପରଦାରେ କି ସୁନ୍ଦର ଅନ୍ତରଙ୍ଗ ଅନୁଭବ !

ଅଶ୍ଳୀଳ ଦୃଶ୍ୟ ଦର୍ଶନ ପାଇଁ ସହରରେ ଇଣ୍ଟରନେଟ୍‌ର ଯୋଗାଯୋଗ ? ବଡ଼ ଭଲ ବ୍ୟବସାୟ ! ମଣିଷକୁ ମାନସିକ ରୋଗୀ କରିବା ପାଇଁ ଯାଂତ୍ରିକ ଗଣିକାଳୟ !

ପି' ନୂଆ ଚାନେଲ୍ ସହିତ ସଂଯୋଗ କଲା !

'ଅବ୍ୟକ୍ତାଦୀନି ଭୂତାନି ବ୍ୟକ୍ତ ମଧ୍ୟାନି....' ! ଅର୍ଥାତ୍ ସମସ୍ତ ପ୍ରାଣୀ ଜନ୍ମ ପୂର୍ବରୁ ଅପ୍ରକଟ ଥାଆନ୍ତି ଏବଂ ମୃତ୍ୟୁ ପରେ ମଧ୍ୟ ଅପ୍ରକଟ ହୋଇଯାଆନ୍ତି ! ପ୍ରକଟ କାଳତକ ହିଁ ଅଟେ ପ୍ରାଣୀର ଜୀବନ ! ଛିନ୍ ଭିତରୁ ପି' ପ୍ରକାଶ କରୁଛି ତା' ଅପ୍ରକଟ କାଳର ଦୃଶ୍ୟ !

କମ୍ପ୍ୟୁଟର ମନିଟର କହୁଛି ପି' କେତେବେଳେ ଯେ ତୁମେ ନ ଥିଲ ? ସୃଷ୍ଟି ପ୍ରାରମ୍ଭରୁ ତୁମେ ରହିଅଛ ! ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଜନ୍ମ ନେଇ ତୁମେ ପ୍ରକଟ ହୋଇଛ !

ବିଷ୍ଣୁ ଲୋକ- ଶିବଲୋକ- ବ୍ରହ୍ମଲୋକ ପ୍ରଭୃତି ସ୍ତର ରହିଛି ଇଥରରେ ! ଦେହ ମୁକ୍ତ, ଆତ୍ମା ସଂଚିତ ପୁଣ୍ୟ ଅନୁଯାୟୀ ପ୍ରାପ୍ତ ହୁଏ ଲୋକ ! ଭୋଗ କରେ ନିଜ କୃତ କର୍ମର ଫଳ ! ହଜମ କରେ ପଛ ଜନ୍ମର ସ୍ମୃତି ଓ ଅନୁଭୂତି !

ତକ୍ଷକ ଚୋଟରେ ପରୀକ୍ଷିତ ପ୍ରାପ୍ତ ହେଲେ ବ୍ରହ୍ମଲୋକ ! ପୁଣ୍ୟ କ୍ଷୀଣ ହେବା ପର୍ଯ୍ୟନ୍ତ ବ୍ରହ୍ମଲୋକ ସୁଖ କଲେ ଭୋଗ ! ତା' ପରେ ବର୍ଷା ଜଳରେ ବନସ୍ପତି ମଧ୍ୟରେ ପ୍ରବେଶ କରି ଅନ୍ନ ବାଟେ ପୁରୁଷ ଦେହରେ ହେଲେ ବୀର୍ଯ୍ୟ ! ବୀର୍ଯ୍ୟ ଯୋଗ୍ୟ ମୁହୂର୍ତ୍ତରେ ଜରାୟୁ ପ୍ରାପ୍ତ ହୋଇ ଆତ୍ମାଙ୍କୁ ଦେହଟିଏ ଦେଇ କଲା ପ୍ରସବ ! ଅଙ୍ଗ ବଢ଼ିଲା, ଶୈଶବ, କୈଶୋର, ଯୌବନ ଗୋଟିକ ପରେ ଗୋଟିଏ ପାବଛ କରି ଅତିକ୍ରମ ! ପୁଣି ବାର୍ଦ୍ଧକ୍ୟ ଓ ମୃତ୍ୟୁର ଅଦ୍ଭୁତ ଆୟତ୍ତ !

ଏକ ରଥ ଚକ !

ଏଥର ମନିଟର୍‌ରେ ଲାଗିଛି ନୂଆ ଦୃଶ୍ୟ !

ପି'ର ଆଉ ଗୋଟିଏ ଜନ୍ମ ! କେମିତି ହୋଇଛି ଭୋଗ, ଉପଲବ୍ଧି କରୁଛି ପି' !

□□□



Source: Author, Digitized by PPRACHIN, SOA

# ଡବ୍ଲୁ ଡବ୍ଲୁ ଡବ୍ଲୁ ଡଟ୍ କମ୍ ଭି ଟୁ ଆର୍

V - 2R ଯେମିତି B2B B2C : କଂପୁଟରରେ ଖୋଲି ଯାଇଛି ! ଅର୍ଥାତ୍ ବିଜନେସ୍ ଟୁ ବିଜିନେସ ବା ବିଜିନେସ୍ ଟୁ କଂଜ୍ୟୁମରଭଳି ଭି ଟୁ ରିବାର୍ଥ ! ଭି ? ଭି ପ୍ରକୃତରେ V ଆକୃତିର ଦେହାଂଶ ଜୀବର ଆଦି ପ୍ରବେଶ ପଥ ! ବା ଜୀବର ବର୍ହିଗମନ ଦ୍ୱାର, ଏହାର କେନ୍ଦ୍ରରେ ଥାଏ ଶୂନ ! କିନ୍ତୁ ଏଇଠୁ ଆରମ୍ଭ ହୁଏ, ବା ସଂଖ୍ୟା ୧ର ଜନ୍ମ !

V ଏକ ମିଥ୍, ମୃତ ଭୂଇଁ ! ମୃତ୍ୟୁ କଳ୍ପନା ଏଇଠୁ ତକ୍ଷକ ହୋଇ ଗୋଡ଼ାଏ ପରୀକ୍ଷିତକୁ ! ମାରିଜୁଆନା + ଆଟମ୍ = ଆତ୍ମା !'

ସ୍ୱାଧୀନ+ପାପ= ଉନ୍ମତ୍ତତାର ଦ୍ୱାର ଭି !

ଚଷମା ପୋଛି ମନିଟରକୁ ଅନାଇଲା ପି' ! ତା' ପରେ ହସିଲା ହୋ ହୋ ହୋଇ ! ଛି, ଛି, V ଟା Vagina; ଗୋଟାଏ ମୂତନଳୀ ! 'ଗ୍ରାଭିଟିସ୍ ରେନ୍‌ବୋ' ରେ ଚରିତ୍ର କ୍ଲାର୍କ ଓ ଡିକ୍ସନକୁ ମିଷ୍ଟର ଥୋମାସ୍ ପିନକୋନ୍, ଆପଣ କି ନକରିଛନ୍ତି ବାଉଳା ? ଗୋଟିଏ ପଏଣ୍ଟ୍ ଉପରେ ଦୁଇଟି ବର୍ଷଣାତ୍ମକ ଶୂନ; ଆପଣ ଲେଖିଲେ 'ଭିନ୍‌ଲ୍ୟାଣ୍ଡ' ? ଭି ଟୁ ରକେଟ୍, ବୃକ୍ଷର ଚେରପରି ପଶି ଯାଇଛି ଖଣ୍ଡେ ଲମ୍ବା ଭୂଖଣ୍ଡ ଅନ୍ତରୀପ ?

ପି' ପାପୁଲି ତଳେ ମାଉସ୍, ମାଧୁରୀ ଦୀକ୍ଷିତର ପଟେ ସ୍ତନପରି ଚର୍ମକୁ ଲାଗୁଛି ! ମନିଟରରେ ଭୂ, ର୍ଭୁବ, ମହ, ଜନ, ତପ- ଗୋଟିଏ ପରେ ଗୋଟିଏ ଲୋକ ଟପି ଦୃଶ୍ୟ ଆସୁଛି ! ଭି ଟୁ ରିବାର୍ଥ ଭି ଟୁ ରିବାର୍ଥ !

ଆରେ ଆରେ ଆରେ.... ଠାଏ ଠିଆ ହୋଇଗଲା ଟିପ, କିଏ ଏ ଲୋକ, କିଏ ? ଠିକ୍ ତା'ରିପରି ଆକୃତି ! ସିନେମାରେ ଯାଆଁଳା ଭାଇ କିମ୍ବା ଭଉଣୀପରି ଦିଶୁଛି ମୁହଁର ଗଠନ !!

ମହାରାଜା ପରୀକ୍ଷିତଙ୍କ ପୁଣ୍ୟ ସମାପ୍ତ ହେବା ପରେ ପୁଣି ସେ ପୃଥିବୀକୁ ଫେରୁଛନ୍ତି ? ଏଥର ତାଙ୍କ ନାମ ପରୀକ୍ଷିତ ଦାସ ! ବାପା ବ୍ଲକ୍ କଂଟ୍ରାକ୍ଟର ! ଗୋଟିଏ ଗାଁରେ ଘର ! ପୁଅ ପରୀକ୍ଷିତ ଜଣେ ବେକାର ଡିପ୍ଲୋମା ଇଂଜିନିୟର !

ବାପା ତା' ସ୍ୱପ୍ନ ଦେଖିଥିଲା : ଗାଁ ରାସ୍ତାରେ ଗୋଡ଼ି ପକାଇବା କିମ୍ବା କୂଅରେ ପ୍ଲାଟଫର୍ମ କରିବା ତାଙ୍କ ବୃତ୍ତି ! ୱାର୍କ୍ ଅର୍ଡର୍‌ଟି ପାଇବା ବେଳେ ଦେଇ ଦେବାକୁ ହୁଏ ବ୍ଲକ୍‌ରେ



Source: Author, Digitized by PPRACHIN, SOA

ଓଭରସିଓରଙ୍କ ହାତକୁ ଏବଂ ଓଭରସିଓରଙ୍କଠୁ ଆରମ୍ଭ କରି ବିଡ଼ିଓ ଦେଇ ସାଂସଦଙ୍କ ପକେଟ ପର୍ଯ୍ୟନ୍ତ ଗାନ୍ଧି ମୁଣ୍ଡର ଚିକ୍‌କଣା ମାଲ୍ ! ଶିଡ଼ି ଲୋକଟି ବଡ଼ କାମିକା ଓ ଦାମିକା ! ତେଣୁ ପୁଅକୁ ଓଭରସିଓର ବା ଜେ.ଇ.ଟିଏ କରିବା ପାଇଁ ସିଏ କରିଥିଲେ ଆପ୍ରାଣ ଉଦ୍ୟମ ! ତା' ହାତ ଦେଇ ମାଲ୍ ଯିବ ଓ ହାତଟା ବି ଭଲ ଚିକ୍‌କଣ ହେବ ! ମାତ୍ର ଚାକିରୀ କାହିଁ ? ଏଇ କୋଡ଼ିଏ ବର୍ଷ ଭିତରେ ସରକାରୀ ବୃତ୍ତିରୁ ଅବସର ନେଲେଣି ତାଙ୍କ ଗାଁ ର ପ୍ରାୟ ତିରିଶ ପାଖାପାଖି ମଣିଷ ! କିନ୍ତୁ କୋଡ଼ିଏ ବର୍ଷ ଭିତରେ ତାଙ୍କ ଗାଁରୁ ନିଯୁକ୍ତି ପାଇ ନାହାନ୍ତି ଜଣେ କେହି ଯୁବକ ! ବେକରେ ଟାଇ ବାନ୍ଧି ତାଙ୍କ ଗାଁର ଭୋକିଲା ଟୋକା ସହରରେ ଦ୍ୱାର ଦ୍ୱାର ବୁଲି ବିକୁଛନ୍ତି ବିତରକଙ୍କ ଗଂଜି, କଲମ, କେୟାର ଫ୍ରି, ସର୍ବତ ସରଞ୍ଜାମ ଓ ହାତବନ୍ଧା ଘଣ୍ଟା ! ଶିକ୍ଷିତା ବଢ଼ିଲା ଝିଅ ବିକୁଛନ୍ତି ବଡ଼ି, ପାମ୍ପଡ଼ ଓ ହଳଦୀଗୁଣ୍ଡା !

ପରୀକ୍ଷିତ ତ ଭୁବନେଶ୍ୱରରେ କିଛି ଦିନ ବୁଟ୍ ପାଲିସ କରୁଥିଲା ! ବାପା ତା ମରିଗଲା ! ଘର ଓ ବିଧବା ମା' ଙ୍କୁ ସମ୍ଭାଳିବା ଦାୟିତ୍ୱ ଏବେ ତା' ମୁଣ୍ଡରେ ଲଦା ହେଲା ! ତେଣୁ ସିଏ ଗାଁରେ ଆସି ରହୁଛି ! ଭଙ୍ଗାଘର, ଅଧା ଭୋକିଲା, ପ୍ୟାଣ୍ଟ ସାର୍ଟ ଠିକ୍ ନାହିଁ; ହାତରେ କଣ୍ଟା ପଇସା କାହିଁ ? ତିରିଶ ମାଇଲ ଦୂରରେ ଥିବା ବ୍ଲକ୍ ଅଫିସଠୁ ରାସ୍ତା ପିଚୁ ହେଉଛି ! କେତେ ଲକ୍ଷ ଟଙ୍କାର କାମ, ସହରର ବଡ଼ କଂଟ୍ରାକ୍ଟର ନେଇଚି ! ତାକୁ ଦେଖା କଲା !

ଦୈନିକ ଚାଳିଶ, ଦରମା ମାସକୁ ବାରଶହ ! ନିଯୁକ୍ତି ପକ୍‌କା ! ମୁହେଁ ମୁହେଁ ! ନୋ ୱାର୍କ, ନୋ ପେ !

ବଂଧାନାରୀ ପାଇଗଲା ଯେମିତି ପୁଅଟିଏ ! ସାଇକେଲ୍‌ରେ ଘରକୁ ଫେରୁଥାଏ ! ମୁଣ୍ଡ ଉପରେ ସୂର୍ଯ୍ୟଟା ଜଳୁଛି ଗୋଟିଏ ଫ୍ୟାକ୍‌ଟ୍ରୀର ଭାଟିପରି ! ଝୋଲା ମାରି ଯାଉଛି ! ପ୍ରଖର କିରଣ ହାତୁଡ଼ି ହୋଇ ମୁଣ୍ଡକୁ ଟାଇଁ ଟାଇଁ ପିଟୁଛି ! ଥକା ମାରି ବସି ପଡ଼ିଲା ଗୋଟିଏ ଆମ୍ବଗଛ ତଳେ !

ଗୋଟିଏ ସବୁଜ ରଙ୍ଗର ଛତା ଆମ୍ବଗଛଟା ! ପବନ ଆଦୌ ନ ଥାଏ ! ଗଛଟା ଋଷିପରି ବସିଥାଏ ! ଠାଏ ବାଲିଜହ୍ନାର ଧାର ଗାରଟିଏ ହୋଇ ଗଛ ଉପରକୁ ଲମ୍ବିଥାଏ !

ଆଉଜି ବସିଛି ପରୀକ୍ଷିତ ଗଛ ଗଣ୍ଡିକୁ ! ହଠାତ୍ ଦୁଇ ଚାରି ବିନ୍ଦୁ ଜଳ ଖସି ପଡ଼ିଲା ତା' କାନ୍ଧରେ ! ଚମକି ଘୁଞ୍ଚି ଆସି ସିଏ ଅନାଇଲା ଉର୍ଦ୍ଧ୍ୱକୁ !



Source: Author, Digitized by PPRACHIN, SOA

ପକ୍ଷୀ ଏକ କଳାକି ବସି କେଉଁ ଡାଳରେ !

ଉହୁଁ ପକ୍ଷୀ ଫକ୍ଷୀ କିଛି ତ ନାହିଁ ! ଏ ମୁଣ୍ଡଫଟା ଖରାରେ ଜଳବିନ୍ଦୁ ତା' କାନ୍ଧରେ ! ଥକା ମେଣ୍ଟିବା ପର୍ଯ୍ୟନ୍ତ ନିରୀକ୍ଷଣ କରିଛି, ତା' ପରେ ଧୀରେ ଧୀରେ ଉଠି ସାଇକେଲରେ ଚଢ଼ି ଘରକୁ ଫେରିଛି !

ସେଇଦିନ ରାତିରେ ସିଏ ସ୍ୱପ୍ନ ଦେଖୁଛି: ଗଛଟା ତା ସାମ୍ନାରେ ଠିଆ ହୋଇ କାନ୍ଦୁଛି ! ନିଦର କାଚଗ୍ଲାସ ଭାଙ୍ଗିଗଲା ପରେ ତାକୁ ବଡ଼ ଅସ୍ତବ୍ୟସ୍ତ ଲାଗୁଛି ! ଯେମିତି ତାର କିଛି ହଜି ଯାଇଛି କିମ୍ବା କିଛି କେହି ଚୋରାଇ ନେଇଛି !

କାମରେ ମୁକରିରି ହେଲା ! କଂଟ୍ରାକ୍ଟର ମନ ଜଗି ଚଳିଲା ! ଦିନକୁ ଦିନ ଚାକିରୀର କଂଚାମାଟିରେ ତିଆରି ମୂର୍ତ୍ତି ଶକ୍ତ ହେଲା ! କାମ ଆସି ଅଟକିଥାଏ ସେହି ଆମ୍ବଗଛ ପାଖରେ ! ଖଣ୍ଡେ ଦୂରରେ ପାଲ ଓ ତମ୍ବୁରେ ତିଆରି ହୋଇଥାଏ ଶ୍ରମିକ ଓ ୱାର୍କ ସର୍କାରମାନଙ୍କ ଶିବିର ! ସେଇଠି ରହୁଛି ପରୀକ୍ଷିତ ! ସେଦିନ ଅସରାଏ ବର୍ଷା ଦିନ ବାରଟାରୁ ଆରମ୍ଭ ହୋଇ ଛାଡ଼ି ଯାଇଥାଏ ଦିନ ଦୁଇଟା ସୁଦ୍ଧା ! ହଠାତ୍ ଗୋଟାଏ ମଟର ସାଇକେଲ୍ ପ୍ରବଳ ବେଗରେ ରାସ୍ତା ଉପରେ ଛୁଟି ଆସି ଉଠି ଗଲା ସେଇ ଗଛ ଉପରକୁ ସିଧା ସିଧା ଛ ସାତ ଫୁଟ ଉଚ୍ଚକୁ ! ତା' ପରେ  କଚି ହୋଇ ପଡ଼ିଲା ତଳେ ! ଆରୋହୀ ବାଇଶି ଚବିଶି ବର୍ଷର ଟୋକାଟାଏ ତଳେ ପଡ଼ିଛି, ତା ଉପରେ ତା ଗାଡ଼ି !

ପେଟଟା ଫାଟି ଯାଇଛି ! ସାରା ପରିବେଶ ମଦ ଗନ୍ଧରେ ପ୍ରଦୂଷିତ ! ମୁଣ୍ଡର ଖପୁରୀ ଛିନ୍ନ ଛତ୍ର ! ଦହି ଓ ରକ୍ତ ବହଳ କାଦୁଅର ଧାର ହୋଇ ବୋହି ଯାଉଛି !

ମୂଲିଆ ମୂଲିଆଣି ମଲା ଟୋକାଟାକୁ ଘେରି ରହିଥାନ୍ତି ! ଭିଡ଼ ଠେଲି ଆଗରେ ଠିଆ ହେଲା ପରୀକ୍ଷିତ !

ଜିନ୍‌ପ୍ୟାଣ୍ଟ ଦାମୀ ସ୍ପୋର୍ଟିଂ ଗଂଜି, ପାଦରେ ଜୋତା ପିନ୍ଧିଛି, ବେକରେ ଗୋଟାଏ ମୋଟା ସୁନା ଚେନ, ହାତରୁ ଦାମୀ ଘଣ୍ଟାଟା ଛିଟିକି ଖଣ୍ଡେ ଦୂରରେ ପଡ଼ିଛି, ଟୋକାଟା ପଡ଼ିଛି ଅତି ଅସହାୟ ଭାବେ, ଖୁବ୍ ପିଇଛି ନାକ ଫାଟି ଯାଉଛି ! ମୁଣ୍ଡରେ ହେଲ୍‌ମେଟ୍ ନାହିଁ !ବଡ଼୍ଡ ନବାବ ! ନ ପିଇଲେ ଚଳିବନି ? ଯଦି ନାକ ଯାଏ ପିଇଲୁ ତେବେ ଗାଡ଼ି କାହିଁକି ଚଳେଇ ଆସିଲୁ ? ପୁଣି ମୁଣ୍ଡରେ ହେଲ୍‌ମେଟ୍ ନାହିଁ ! ମଣିଷ ମଟର ସାଇକେଲକୁ ଚଢ଼େ, ମଟର ସାଇକେଲ ଯେତେବେଳେ ମଣିଷ ଉପରେ ଚଢ଼େ..... ?



Source: Author, Digitized by PPRACHIN, SOA

ପରୀକ୍ଷିତ ଶୋଇଛି ତମ୍ବୁ ଭିତରେ ତା' ଦଉଡ଼ି ଭିଡ଼ା ଖଟ ଉପରେ ! ରାତି କେତେ ହେବ କେଜାଣି, ମିଟି ମିଟି ହୋଇ ଅନାଇ ଥିବା ଲଣ୍ଠନଟା ବି ଶୋଇପଡ଼ିଥାଏ ଖଣ୍ଡେ ଦୂରରେ ! ହଠାତ୍ ଆକ୍ସିଡେଣ୍ଟ ଗଛଟା ଆସି ଠିଆ ହେଲା ତା' ସାମ୍ନାରେ !

'ପରୀକ୍ଷିତ ....ମତେ ଚିହ୍ନି ପାରୁଚ, ପୁଅ ? ନା' ତମେ ମତେ ଚିହ୍ନି ପାରିବନି ! ତମ ସ୍ମୃତି ହଜମ ହୋଇ ଯାଇଛି ! ସେଦିନ ନିଦର ଖେଳନା ତା' ଭାଙ୍ଗି ଯାଇଛି ! ପଦାକୁ ଉଠି ଆସିଛି, ଜହ୍ନ କେତେବେଳୁ ଡୁବି ସାରିଛି ! ଅନ୍ଧାର ଗିଳିଛି ବୁରଖାପରି, ଅନନ୍ୟ ସୁନ୍ଦରୀ ଧରିତ୍ରୀ ରାଣୀର ଆପାଦ ମସ୍ତକ ! ପବନ ଓଠରେ ଏବେ ମିଠା ମିଠା ହସ ! ପରୀକ୍ଷିତ ତ୍ୟାଗ କରିଛି ଏକ ସୁଦୀର୍ଘ ଉତ୍ତପ୍ତ ନିଶ୍ୱାସ ! ଟିକିଏ ଦୂରକୁ ଯାଇ ଏକ କରି ଫେରି ଆସିଛି ପୁଣି ଶେଯକୁ ! ଶେଯ ଓ ନିଦ ତାକୁ ବୋଉପରି ଆଉଁସି ପକେଇଛନ୍ତି !

'ସ ଭଗବାନଃ କସ୍ମିନ୍ ପ୍ରତିଷ୍ଠିତଃ' ?<br>
ସେହି ଭଗବାନ କେଉଁଥିରେ ପ୍ରତିଷ୍ଠିତ ?<br>
'ସ୍ୱେ ମହିମ୍ନି' !<br>
ନିଜର ମହିମାରେ !

ତାଙ୍କ ମହିମା : ଚୈତନ୍ୟଂ ସର୍ବଭୂତାନାଂ ଶବ୍ଦବ୍ରହ୍ମେତି ମେ ମତିଃ ! ଶବ୍ଦବ୍ରହ୍ମ ପ୍ରାଣୀଙ୍କ ଅନ୍ତରରେ ପରିବ୍ୟାପ୍ତ ! ଶବ୍ଦ ବ୍ରହ୍ମେତି ଶବ୍ଦାର୍ଥମ୍... ! ସେ ହିଁ ଶ୍ରୀବୀଜ ! ସେ ହିଁ ଶବ୍ଦ ଓ ଅର୍ଥ ! ସେ ହିଁ ନାମବ୍ରହ୍ମ! ଆଖିର ଝରକା ଫିଟିବା ମାତ୍ରେ ଦୁଇ ପାପୁଲି ଯୁକ୍ତ କଲା ପରୀକ୍ଷିତ ! ପଂଝୁରୀ ଭିତରେ ବାରମାସୀ ଚଢ଼େଇଟିଏପରି ଧାରଣାଟିଏ ଖେଳୁଛି : ହରିର୍ହରତି ପାପାନି ଦୁଷ୍ଟଚିତ୍ତୈରପିସ୍ମୃତଃ ! ଅନିଚ୍ଛୟାପି ସଂସ୍ପୃଷ୍ଟୋ - ଦହତ୍ୟେବ ହି ପାବକଃ !

କଳୁଷିତ ଚିତ୍ତରେ, ଇଚ୍ଛା ନଥିଲେ ବି ଯଦି କେହି ହରିନାମ କରେ ସ୍ମରଣ ତା' ଠୁ ପାପ ହୁଏ ଦୂର ! ଯେମିତି ଅଜାଣତରେ ଅଗ୍ନିକୁ ସ୍ପର୍ଶ କଲେ ଜଳି ଯାଏ ଅଙ୍ଗ ! ହିରନାମର ଠିକ୍ ସେମିତି ସାବୁନପରି କାମ ! ସଫା କରିଦିଏ, ନିର୍ମଳ କରିଦିଏ, ସବୁ ଧୂଳି ମଳିର ଆସ୍ତରଣ !

ମଣିଷ କେତେବେଳେ ଦୁଃଖ ବିହୀନ ?

ଦେହରେ ବସ୍ତ୍ର ପରି ଦୁଃଖ ତାକୁ ଆଚ୍ଛାଦିତ କରି ରହିଛି ! କି ଗରୀବ, କି ଧନୀ, ସମସ୍ତଙ୍କ ପାଇଁ ଗୋଟିଏ ରୋଗ, ସାରା ସଂସାରକୁ ଆବୋରି ବସିଛି : ଦୁଃଖ।! ତା'ଠୁ


Source: Author, Digitized by PPRACHIN, SOA

ତ୍ରାହି ପାଏ ମଣିଷ ? ଖବର ପଂହଚିଲା, ଗତ ରାତ୍ରିରେ ହାର୍ଟ ଆଟାକ୍‌ରେ ବୁଢ଼ା କଂଟ୍ରାକ୍ଟର ସଂସାରକୁ ପର କରି ଦେଲେ ! ବିଚରା ବଡ଼ ଭଲ ମଣିଷ ଥିଲେ !

ପରୀକ୍ଷିତ ଭାବୁଥିଲା ! ଦୟାକରି ତାକୁ ଚାକିରୀଟି ଦେଇଥିଲେ ! ଏବେ– ତା ଆଶ୍ରୟର ଡାଳଟି ଭାଙ୍ଗିଗଲା ? ଭଙ୍ଗା ଡାଳରେ ବସା ବାଂଧି ଥିବା ପକ୍ଷୀଟିର ଅବସ୍ଥା ଏବେ କ'ଣ ହେବ ? ଈଶ୍ୱରଙ୍କ କରୁଣା ଅମାପ ! କଂଟ୍ରାକ୍ଟରଙ୍କ ପୁଅ ବୃତ୍ତିରେ ଅଣ୍ଟାଭିଡ଼ି ଠିଆ ହେଲା !

'ମଙ୍ଗଲ୍ୟେ ମାଙ୍ଗଲ୍ୟଂ ବିଷ୍ଣୁମ୍‌.....' ପରୀକ୍ଷିତ ସ୍ମରଣ କଲା ନାମବ୍ରହ୍ମ ଶବ୍ଦବ୍ରହ୍ମଙ୍କୁ ! ଔଷଧ ସେବନ ବେଳେ ସ୍ମରଣ କରାଯାଏ 'ବିଷ୍ଣୁ', ଭୋଜନ ବେଳେ 'ଜନାର୍ଦ୍ଦନ', ଶୟନ ସମୟରେ 'ପଦ୍ମନାଭ' ବିବାହ ସମୟରେ ସିଏ 'ପ୍ରଜାପତି', ଯୁଦ୍ଧ କାଳରେ 'ଚକ୍ରଧର', ପ୍ରବାସରେ ସ୍ମରଣ କରାଯାଏ 'ତ୍ରିବିକ୍ରମ', ଶରୀର ତ୍ୟାଗ ବେଳେ 'ନାରାୟଣ, ପ୍ରିୟ ସଙ୍ଗମ ବେଳେ 'ଶ୍ରୀଧର', ଦୁଃସ୍ୱପ୍ନ ଦୋଷ ପରିହାର ପାଇଁ ନିଦ ଭାଙ୍ଗିଲେ, 'ଗୋବିନ୍ଦ', ସଙ୍କଟ ସମୟରେ 'ମଧୁସୂଦନ', ଘୋରବନରେ 'ନୃସିଂହ', ଅଗ୍ନି ଲାଗିଲା ବେଳେ 'ଜଳଶାୟୀ', ଜଳ ଭିତରେ 'ବରାହ', ପର୍ବତ ଉପରେ 'ରଘୁନନ୍ଦନ', ଗମନ କାଳରେ ସ୍ମରଣ କରାଯାଏ 'ବାମନ' ଏବଂ ସକଳ କାର୍ଯ୍ୟାରମ୍ଭରେ 'ମାଧବ' ! ଭଗବାନଙ୍କ ଏହି ଷୋଳ ନାମ ସକାଳୁ ଉଠି ପରୀକ୍ଷିତ କଲା ସ୍ମରଣ !

ନାମବ୍ରହ୍ମର ପହଁରା ଓଳେଇ ନେଲା ତା' ପଥରୁ କଂଟା ? ଦୁଇ ଭାଗ ହୋଇ ବସୁଦେବଙ୍କୁ ଯେମିତି ବାଟ ଛାଡ଼ିଥିଲା ଯମୁନା ! ବଢ଼ନ୍ତି ନଦୀଟା !

କଂଟ୍ରାକ୍ଟରଙ୍କ ବିଦାୟ ଏହା ମଧ୍ୟରେ ବାରଦିନରେ ପହଂଚିଛି ! ଏହି ଯୁବ ଇଂଜିନିୟରଙ୍କ ସହିତ କଂଟ୍ରାକ୍ଟରଙ୍କ ବିଧବା ପତ୍ନୀଙ୍କ ବାରମ୍ବାର ଭେଟଭାଟ ଓ ସୁସମ୍ପର୍କ ବଢ଼ିଛି। ଆସ୍ଥା ବି ବଢ଼ିଛି! ଯେଉଁ ଚାକିରୀର ବୃକ୍ଷଟି ଉପୁଡ଼ି ପଡ଼ିବ ବୋଲି ଆଶଙ୍କାରେ କମ୍ପୁଥିଲା, ତାହା ବଦଳି ଯାଇଛି ! ଯେମିତି ବଦଳେ ମେଘ ଭର୍ତ୍ତି ଆକାଶର ରଙ୍ଗ ! ଚୁନା ଚୁନା ଫୁଲପରି ଫୁଟି ଉଠେ ତାରା !

'ରାସ୍ତାକୁ ମାଡ଼ିଥିବା ଗଛଟାକୁ କାଟି ଦେବାକୁ ହେବ ! ଯୁବ କଂଟ୍ରାକ୍ଟର ଗୁମାସ୍ତାକୁ ଦେଇଗଲେ ନିର୍ଦ୍ଦେଶ ! 'କଂଚା ଗଛଟାକୁ କାଟିବାକୁ ପରିମିସନ୍ ଦରକାର ହେବ ! ଆମ କାମ ଗଛ ପର୍ଯ୍ୟନ୍ତ ଆଗେ ଯାଉ, ତା' ପରେ କାଟିବା କଥା ଦେଖାଯିବ ! ଗଛକଟା ରୋକିଦେଲା ପରୀକ୍ଷିତ !



Source: Author, Digitized by PPRACHIN, SOA

ସେଇଦିନ ମଧ୍ୟରାତ୍ରୀ ! ଟେବୁଲ୍ ଉପରେ ଲଣ୍ଠନଟା ମିଂଛି ମିଂଛି କରି ଅନାଇଛି ! ପରୀକ୍ଷିତ ସ୍ୱପ୍ନ ଦେଖୁଚି :

ବୟସ କେତେ ହେବ କେଜାଣି, ଧଡ଼ିଆ, ପତଳା, ଡେଙ୍ଗା ବୃଦ୍ଧ ବ୍ରାହ୍ମଣ ଜଣେ ଗୋଟିଏ ନାଲିରାସ୍ତାରେ ଚାଲିଛି ! ଦେହ ତା' ବାତଜ୍ୱରରେ କଂପୁଛି ! ବାଡ଼ି ଉପରେ ଭରା ଦେଇଛି ! ଟଳି ପଡ଼ିଲା ବେଳେ ମଝିରେ ମଝିରେ ତା' ସହିତ ଚାଲିଥିବା ତା' ଯୁବତୀ ଝିଅ ତାକୁ ଧରି ପକାଇ ଆଶ୍ରା ଓ ସହାୟତା ପ୍ରଦାନ କରୁଛି ! ଆକାଶ ମେଘାଛନ୍ନ ! ହଠାତ୍ ପ୍ରବଳ ପବନ ସୁ ସୁ ହୋଇ କାଠିକୁଟା ଉଡ଼େଇ ରାସ୍ତାକଡ଼ର ବୃକ୍ଷ ଡାଳମାନ ଭାଙ୍ଗି ଦେଇ ଗଦେଇ ଦେଲା ! ବର୍ଷାର ବଡ଼ ବଡ଼ ବୁନ୍ଦା ଧଳା ଧଳା ବାଟି ପରି ପିଟି ହେଲା ଦେହରେ ! ବାଡ଼ି ଓ ଝିଅ କାନ୍ଧକୁ ଆଶ୍ରୟ କରି ଘୁଷୁଡ଼ି ଘୁଷୁଡ଼ି ବୁଢ଼ା ବ୍ରାହ୍ମଣ ଚାଲିଛି ଆଗକୁ ! ଆଗରେ ପ୍ରାୟ ଶହେ ଗଜ ଦୂରରେ ଗୋଟିଏ ବଡ଼ ଚାରି ଫୁକାର ବ୍ରିଜ୍ ! ଗର୍ଜି ଗର୍ଜି ପାଣି ଚାଲିଛି ! ବ୍ରିଜ୍ ଆରପଟେ ଗୋଟେ ଚା' ଦୋକାନ ! ବାପ ଝିଅ କୌଣସି ପ୍ରକାର ପଂହଚି ଗଲେ ସେଇଠି !

ତାଳ ପତ୍ରର ତାଟି ଦୋକାନୀ ନୁଆଁଇ ଦେଇଛି ! ଫାଳେ ଦରଆଉଜା କବାଟ ବାଟେ ବାପ ଝିଅ ଭିତରେ ପଶିଗଲେ !

ଦିନ ତିନିଟା, କି ସାଢ଼େ ତିନିଟା ! ସାଢ଼େ ଚାରିଟାରେ ପାସେଞ୍ଜର ଗାଡ଼ି ! ବାପ ଝିଅ ଆସିଥିଲେ ହୁକୁମ ପାଇଁ ପାଖ ଗାଁକୁ ! ହୁକୁମ ପାଇ ଭଲ ହୋଇଯାଉଛି ଅସାଧ ରୋଗ, ବାଂଝର ହେଉଛି ଗର୍ଭୋଦୟ, ଚାକିରୀ ମିଳିଲାଣି ବେକାର ଟୋକାଙ୍କୁ, ବିନା ଯୌତୁକରେ ବାହା ହେଲେଣି ବୟସ ଗଡ଼ିଲା ଝିଅ, ଆଉ ପ୍ରମୋଶନ ? ହୁକୁମ ମିଳିବାର ଠିକ୍ ସାତ ଦିନରେ ମିଳିଛି ! ପ୍ରଚାର ଚାଲିଛି; ପ୍ରସାର ଚାଲିଛି !

ମିଛ ବିଶ୍ୱାସର ରାସାୟନିକ ରୋଗଟିଏ ଗାଁ'ରୁ ଗାଁକୁ ବ୍ୟାପିଛି ! ସେଇ ରୋଗର ଶିକାର ବାପଝିଅ ଦୁହେଁ ପ୍ରକୃତିର କ୍ରୋଧିତ ଦୃଷ୍ଟିରେ ପଡ଼ିଛନ୍ତି !

ଭୋକପରି ବର୍ଷା ବଢୁଛି ! ପବନ ବେଳକୁ ବେଳ ତଂପ ସାପପରି ଆହୁରି ଭୟାନକ ହୋଇ ଗଛ ବୃଛ ଭାଙ୍ଗି ଗଦାଉଛି ! ପଦାକୁ ବାହାରିଲେ ମଣିଷକୁ କାଗଜପରି ଉଡ଼େଇ ନେବ କୁଆଡ଼େ ! ଦରଆଉଜା କବାଟ ବଂଦ କରି ଦେଇଥିଲା ଦେକାନୀ ! ଭିତରେ ବେଞ୍ଚ୍ ଉପରେ ବସୁ ବସୁ ଟଳିପଡ଼ି ଥିଲା ଅସୁସ୍ଥ ବୃଦ୍ଧ ବ୍ରାହ୍ମଣ ! ବ୍ୟାଗ୍‌ରୁ ଶୁଖିଲା ଗାମୁଛା ଖଣ୍ଡେ ବାହାର କରି ଝିଅ ପୋଛି ପକାଇଲା ନନାଙ୍କ ମୁଣ୍ଡ ଓ ଦେହ ହାତ !



Source: Author, Digitized by PPRACHIN, SOA

'ମଉସା, କ'ଣ ଦେହ ଖରାପ ?' ପଚାରିଲା ଦୋକାନୀ ! ଗୋରା, ଡେଙ୍ଗା, ପଟାଭଳି ବେଶ୍ ଚୌଡ଼ାଛାତି ! ମୁହଁରେ ସରୁ ନିଶ, ଚିକ୍‌କଣ ଗାଲ, ଦେହରେ ନୀଳମଡ଼ା ଗଂଞ୍ଜି ଓ ପିନ୍ଧିଛି ଖଣ୍ଡେ ସ୍ୟାହି ରଙ୍ଗ ଖୋର୍ଦ୍ଧା ଲୁଙ୍ଗି ! ବୁଢ଼ା କଂପୁଛି ! କଂପ କମୁ ନାହିଁ ! ଦୁଇ ଖଣ୍ଡ କନ୍ଥା ଦୋକାନ ଖଟ ତଳୁ କାଢ଼ି ଦେଲା ଦୋକାନୀ ! ଖଣ୍ଡିଏ ବେଞ୍ଚରେ ପାରି ବୁଢ଼ାକୁ ଶୁଆଇ ଦେଲା ଏବଂ ଅନ୍ୟ ଖଣ୍ଡିକ ଭଲ କରି ତାକୁ ଘୋଡ଼ାଇ ଦେଲା !

ଚୁଲିରେ ଗରମ କଲା ଚା' କେଟିଲ୍ !

ପଥର କୋଇଲା ନିଆଁ ପଳାସ ଫୁଲ ଲେଖା ଦାଉ ଦାଉ ଦିଶୁଥାଏ !

ଓଦା ଝିଅଟି ବାଳ ମୁକୁଳା କରି ନିଆଁ ଧାସରେ ସେକି ହେଉଥାଏ !

'କ'ଣ ହୁକୁମ୍‌କୁ ଆସିଥିଲ ? ତମ ଘର କେଉଁଠି ? ତମେ ତ ପୁରା ଓଦା ହୋଇଯାଇଛ ? ଚୁଲିରେ ସେକି ପକାଅ ତମ ଲୁଗା ! ଚା' ନିଅ, ତମ ବାପାଙ୍କୁ ଦିଅ, ଟିକିଏ କଡ଼୍‌କା ହୋଇଯାଉ ବୁଢ଼ା ! ପରିଚୟର କବାଟ ଖୋଲୁଥିଲା ! ସମ୍ପର୍କର ଆଲୁଅ ଓ ଆନ୍ତରିକତାର ପବନ ମନର ବଖରାକୁ କଲା ନିର୍ଭୟ ଓ ନିର୍ଭରପୂର୍ଣ୍ଣ ! ଦେକାନୀ ଉଠି ଯାଇ ଲଣ୍ଠନ ଲଗାଇଲା ! ଚୁଲିକୁ ପିଠି କରି ରାତ୍ରୀ ଭୋଜନ ପାଇଁ ପରିବା କାଟିଲା ! ଢଳଖିଆ ଆଲମିରା କରରେ ଠିଆ ହୋଇ ଝିଅ ଲୁଗାଟିର ଗୋଟିଏ ପାଖ ସେକି ଶୁଖିଲା କରି ପିନ୍ଧିଲା ଏବଂ ଅନ୍ୟ ପାଖଟିକୁ ଚୁଲି ଆଡ଼କୁ ଦେଖାଇ ସେକିଲା ! ଦେକାନୀ ପରିବା କାଟି ଅଟା ଚକଟୁଛି ! ବୋଧେ ରୁଟି ସେକିବ ! ଓଦା ବ୍ଲାଉଜ୍‌କୁ ଦେହରୁ ଫିଟାଇ ଚୁଲି ଉପରକୁ ନଇଁ ସେକୁଥାଏ ଝିଅ ! କବାଟ ସନ୍ଧିରେ ହଠାତ୍ ଦଲକାଏ ପବନ ପଶିଆସି ହୁକ୍‌ରୁ ଖସାଇ ମେଲା କରି ଦେଲା ଫାଳେ କବାଟ ! ଝିଅର ଛାତିରୁ ଖସି ଗଲା ହୁଗୁଳା ବସ୍ତ୍ର ! ଲଣ୍ଠନ ଆଲୁଅ ପଡ଼ିଛି ! ଦୋକାନୀ ବେକମୋଡ଼ି କବାଟ ସହିତ ତା' ଆଡ଼ିକି ଅନାଇ ଦେଇଛି !

ଓଃ କି ଛାତି ? ରକ୍‌କିନା ହୋଇଗଲା ତା'ଛାତି ଓ ଦୃଷ୍ଟି ! ମୁକୁଳା ମାଂସର ଶଂଖ ହଳେ ଯେମିତି ଠିଆ ହୋଇଛି ! ଦାଉଁକିନା ଦୋକାନୀ ଚମକି ପଡ଼ିଛି ! ତା' କୋଳ ଭିତରେ ଯେମିତି ଖସି ପଡ଼ିଲା ଗୋଟେ ଚକି ! କି ମୂର୍ତ୍ତି !

ବାପ, ଅଫିମ ଟିକିଏ ଏଠି କୋଉଠି ଯଦି ମିଳନ୍ତା ..... ! ବୁଢ଼ା ବ୍ରାହ୍ମଣ ପଚାରିଲା !

'ଏଇ ପୋଲ ଆରପଟେ ! ବର୍ଷା ଟିକିଏ କମୁ ! ମୋର ଟିକିଏ ଶିବପ୍ରସାଦ (ଗଂଜେଇ)



Source: Author, Digitized by PPRACHIN, SOA

ବି ଦରକାର, ମୁଁ ଯାଇ ନେଇ ଆସିବି !' ଦୋକାନୀ ଦେଲା ଉତ୍ତର ! ହେଲେ, ବର୍ଷା କି ପବନ କମୁ ନଥାଏ କିଛି ! ବୁଢ଼ା ବାପକୁ ଝିଅଟି ଘଷି ମୋଡ଼ି ଦେଉଛି ! ରାତି କେତେ ହେବ କେଜାଣି ! ଛତାଟିଏ ଧରି ପଦାକୁ ବାହାରି ଗଲା ଦୋକାନୀ ! ଅଧଘଣ୍ଟାଟିଏ ପରେ ବୁଢ଼ାକୁ ଆଣି ଦେଲା ଅଫିମ ଅଣାଏ ! କଳା ଗଂଜାଇ !

ମଧ୍ୟ ରାତ୍ରୀ ! ବାହାରେ ବର୍ଷା ଗର୍ଜୁଛି ! ପବନ ବି ଚିତ୍କାର କରୁଛି ! ଭୁଷ୍‌ଭାଷ୍ ଗଛରୁ ଡାଳ ଭାଙ୍ଗି ତଳେ ପଡୁଛି !

ବେଞ୍ଚ୍ ଉପରେ ବାପ, ତଳେ ଖଣ୍ଡେ ଅଖା ଉପରେ ଶୋଇଥାଏ ଝିଅ, ଦେକାନ ଖଟ ଉପରେ ଦୋକାନୀ, ଗୋଟେ କ'ଣରେ ବଖରା ଭିତରକୁ ଦିକ୍ ଦିକ୍ କରି ଅନାଇଥାଏ ଏକକାନିଆ ଢଳି କାଚ ସାରା କଳା ବୋଲି ହୋଇଥିବା ଲଣ୍ଠନ !

ହଠାତ୍ ଚିତ୍କାର କରି ଉଠିଲା ଝିଅଟି ! ଶୂନ୍ୟେ ଶୂନ୍ୟେ ତାକୁ ଟେକି ନେଉଛି ଦୁଇଟି ବାହୁ !

ମାଛଟିଏପରି ସିଏ ହେଉଥାଏ ଛାଟିପିଟି !

ତା' ଲଙ୍ଗଳା ଦେହକୁ ନିଜର ଲଙ୍ଗଳା ଦେହ ତଳେ ଚାପି ଧରିଛି ଦୋକାନୀ !

ପଟେ ଆପେଲକୁ କାମୁଡ଼ି ଗିଳୁଛି ଯେମିତି ଆଦିମ ସାପର ପାଟି ! ତା' ଦୁଇ ଗୋଡ଼କୁ ଦୁଇ ହାତରେ ଭିଡି ମୋଡ଼ି ମାଡ଼ି ଅଲଗା କରି ଦେଇଛି ! ଆଜୀବନ ବଂଦୀଟିଏ ଯେମିତି ସାବଳରେ ଗାତ ଖୋଳୁଛି !

ଧାଇଁ.....ଧାଇଁ.... !

'ମୋ.....ବୋଉଲୋ, ମରିଗଲି....ନ'....ନନା'....ନ'ନା !

ତା ପାଟିକୁ ଚିପି ଧରିଚି ଗୋଟାଏ ପାପୁଲି !

ବୁଢ଼ାର ଆଖି ଖୋଲି ଯାଇଛି ! କିନ୍ତୁ ସିଏ ଉଠି ପାରୁନି ! କନ୍ଥା ଭିତରୁ ବେଞ୍ଚ୍ ଉପରୁ ତଳକୁ ଗଡ଼ି ପଡ଼ିଛି ! ଗୋଟିଏ ହାତରେ ଖଟ ତଳୁ ଦୋକାନୀ ଭିଡ଼ି ଆଣିଛି ଚାରି ଇଞ୍ଚ ଚୌଡ଼ା ଦୁଇ ଫୁଟିଆ ଗୋଟିଏ ଧାରୁଆ ଚକ୍ ଚକ୍ ଫାର୍ସା ! ବୁଢ଼ା ଆଡ଼କୁ ଚିହିଙ୍କି ଆସିଲା !

ଇଏ କ'ଣ କରୁଛ, ପୁଅ ? ମୁଁ ବୁଢ଼ା ବ୍ରାହ୍ମଣ, ଇଏ ମୋ ବାଳୁତ କୁମାରୀ ଝିଅ !



Source: Author, Digitized by PPRACHIN, SOA

ଆମେ ଏଇ ଭୀଷଣ ବର୍ଷା, ପବନ ରାତିରେ ତୋରି ଆଶ୍ରିତ ! ଆମେ ତ ତୋ ଶତ୍ରୁ ନୋହୁଁ, ତୁ କାହିଁକି ଆମ ପ୍ରତି ଏପରି ହିଂସୁକ ହେଉଛୁ, ପୁଅ ?

ଆମକୁ ଆଶ୍ରୟ ଦେଇଛୁ, ଖାଇବାକୁ ଦେଇଛୁ, ଘୋଡ଼ି ହେବାକୁ କନ୍ଥା ଦେଇଛୁ, ଶେଷକୁ ଏ ଲଜ୍ୟା କାହିଁକି ଦେଉଛୁ, ପୁଅ ?

'ଚୁପ୍, ଶଳା ବୁଢ଼ା ! ତତେ କାଟି ଭସେଇ ଦେବି ଚାରି ଫୁକାର ପାଣିରେ ! ମୋ କାମରେ ବାଧା ଦେ'ନା ବେ'... ! ଚୋଟ ବସେଇ ଦେଲା ବେଳେ ତା' ଆଗରେ ଠିଆ ହୋଇ ପଡ଼ିଲା ଅତି ବିକଳ ହୋଇ ଝିଅ !

'ମୋ ନନାଙ୍କୁ ମାର ନାହିଁ, ମାର ନାହିଁ, ମୁଁ ତମ ଗୋଡ଼ ଧରୁଛି, ସିଏ ବୁଢ଼ା ମଣିଷ, ମତେ ବରଂ ହାଣ !'

'ମୁହଁ ଘୋଡ଼ାବେ, ବୁଢ଼ା !' କନ୍ଥାଟା ବୁଢ଼ା ମୁହଁରେ ମାଡ଼ି ଦେଲା ! ଉଲଗ୍ନ ଝିଅକୁ ଟେକି ନେଲା ଖଟ ଉପରକୁ !

'ପୁଅ, ପୁଅ, ତତେ ତୋ ଭଗବାନଙ୍କ ରାଣ ! ମୋ କୁଆଁରୀ ଝିଅକୁ ଛାଡ଼ି ଦେ'! ବାଡ଼ ହୋଇ କ୍ଷେତ ଖାଆନା ପୁଅ ! ଆମେ ତୋ ଆଶ୍ରିତ ! ବାଡ଼ ହୋଇ କ୍ଷେତ ଖାଇଲେ ତତେ ଧର୍ମ ସହିବ ନାହିଁରେ ପୁଅ ! ଏ ଅଧର୍ମ କରନା ! ମୋର ନିଷ୍କଳଙ୍କ କୁଆଁରୀ ଝିଅ! ଚନ୍ଦ୍ରରେ ବୋଳିଦିଅ ନାହିଁ କଳଙ୍କ, ପୁଅ!'

'ଚୁପ୍ ବେ ଶଳା, ଦେଖିବୁ, ଟେକି ନେଇ ପାଣିକୁ ଫୋପାଡ଼ି ଦେବି ଲାଗିବୁ ଯାଇ ସମୁଦ୍ରରେ !' ମାରିଲା ତଳକୁ ପାଦ କାଢ଼ି ବୁଢ଼ାକୁ ଗୋଟାଏ ଗୋଇଠା !

'ପୁଅ, ମୁଁ ବୁଢ଼ା, ରୋଗା- ଉଠି ପାରୁନାହିଁ ! ତା' ବୋଲି ନୁହେଁ ନପୁଂସକ ! ତେନ୍ତୁଳି ଗଛ ବୁଢ଼ା ହୋଇଗଲେ, କିମ୍ୱା ନିମ୍ବ ବୁଢ଼ା ହୋଇଗଲେ ତା' ଗୁଣ ଛାଡ଼େ ନାହିଁ ! ଏ ବଳ, ବୟସ ଓ ବହପ ତୋର ରହିବନି !'

'ଚୁପ୍.... !' ପୁଣି ଗୋଟାଏ ଗୋଇଠା ମାରିଲା ବେଳକୁ ବିକଳ ହୋଇ ଝିଅ ତା' ଗୋଡ଼କୁ ଜାକି ଧରିଛି !

ଗୋଟିଏ କୋଣରେ ମୁହଁରେ କଳାବୋଳି ନିର୍ଲଜଭଳି ଲଣ୍ଠନଟି ଅନାଇ ଦୃଶ୍ୟମାନ ଦେଖୁଛି !



Source: Author, Digitized by PPRACHIN, SOA

ସକାଳ ହେବା ପୂର୍ବରୁ ବର୍ଷା ଓ ପବନ ଥମିଥାଏ ! ଫର୍ଚ୍ଚା ହୋଇ ଆସୁଥାଏ ! ବାପ ଓ ଝିଅଙ୍କୁ ପଦାକୁ ତଡ଼ି ଦେଲା ଦୋକାନୀ ! ବୁଢ଼ା ଚାଲି ପାରୁ ନଥାଏ ! ଝିଅ ପେଙ୍ଗାଉଥାଏ ! କୌଣସି ପ୍ରକାର ଘୁଷୁଡ଼ି ଘାଷୁଡ଼ି ଦୁହେଁ ପହଞ୍ଚିଥିଲେ ଗୋଟିଏ ମାଇଲ ଦୂରରେ ଥିବା ରେଲ୍ ଷ୍ଟେସନରେ !

ଝିଅ କାନ୍ଦୁଥାଏ ! ବାପ କାନ୍ଦୁ ଥାଏ ! ନୂଆ ଶୀତଳ ସକାଳ ସେମାନଙ୍କୁ ନିଜର ମୃତ୍ୟୁର ଦିନ ଭଳି ଲାଗୁଥାଏ ! ପାସେଞ୍ଜର ଟ୍ରେନ୍ ଆସି ଠିଆ ହେଲା ! ବୃଦ୍ଧ ବାପକୁ ପ୍ରଥମେ ଚଢ଼ାଇଲା ଝିଅ, ତା' ପରେ ନିଜେ ଚଢ଼ିଲା ! ଟ୍ରେନ୍ ଚଢ଼ିଲା ବେଳେ, ଉଭୟ ଅନୁଭବ କରୁଥିଲେ ଯେମିତି ଦୁହିଁଙ୍କ କାନ୍ଧରେ ରହିଛି ଦୁଇଟି ଭାରି ଗଣ୍ଠିଲି !!

ସେମାନେ ତାକୁ କାଢ଼ି କେଉଁଠି ରଖିପାରୁ ନ ଥାନ୍ତି; ଯଦିଓ ମାଲ ରଖିବା ସ୍ଥାନ ଓ ସିଟ୍ ବି ଥିଲା ଖାଲି !

ହଠାତ୍ ଗୋଟାଏ ଅଟ୍ଟହାସ୍ୟ ଶୁଭିଛି ! ତମ୍ବୁ ଭିତରେ ଶୋଇଥିବା ପରୀକ୍ଷିତ ଆଖି ମେଲିଛି ଏବଂ ପୁଣି ବନ୍ଦ କରିଛି !

ଆରେ, ଇଏ ତ ସେଇ ଆକ୍ସିଡେଣ୍ଟ ଗଛ ! ଗଛଟା ମଣିଷପରି ହସୁଛି ?

ପଛ ଜନ୍ମର ସ୍ମୃତିକୁ ହଜମ କରି ସାରିଲା ପରେ ଆତ୍ମା ଗ୍ରହଣ କରେ ମଣିଷ ଜନ୍ମ ! ପଛ ଜନ୍ମର ସ୍ମୃତି ଜୀଇଥିବା ପର୍ଯ୍ୟନ୍ତ ଆତ୍ମା ଇମିତି ଗଛବୃକ୍ଷ ହୋଇ ଜନ୍ମ ନେଉଥିବ ! ଯେଉଁ ଟୋକାଟା ମଟର ସାଇକେଲରେ ଆସି ମୋ ଦେହରେ ପିଟି ହୋଇ ମଲା, ସିଏ କିଏ, ତାକୁ ତୁମେ ଜାଣିଛ, ପରୀକ୍ଷିତ ?

ସିଏ ସେଇ ଦୋକାନୀ ! ତାକୁ ମୁଁ ଆକର୍ଷଣ କରି ଆଣି ଉପରକୁ ଉଠାଇ ଟେକି କଚି ଦେଇଛି !

ପୁଣି ହୋ-ହୋ-ହୋଇ ଅଟ୍ଟହାସ୍ୟ କରିଛି ଗଛଟି ! ପରୀକ୍ଷିତର ନିଦ୍ରା ତୁଟି ଯାଇଛି ! ସେ ବାହାରକୁ ଉଠି ଆସିଛି ! ତା' ତମ୍ବୁଠୁ ଅଳ୍ପ ଦୂରରେ ମୂଲିଆ ଓ ମୂଲିଆଣିଙ୍କ ତମ୍ବୁ ! ସେମାନେ ଉଠିଗଲେଣି !

ସକାଳ ହେଲାଣି !

ପରୀକ୍ଷିତ ଗୋଟିଏ ମୀନା ବଜାରରେ ଘୂରୁଛି ! ବଡ଼ ବିଚିତ୍ର ଓ ଅଜବ ସ୍ୱପ୍ନ ସିଏ ଦେଖୁଛି !



Source: Author, Digitized by PPRACHIN, SOA

ବଡ଼ ଉଦାସ ଉଦାସ ଲାଗୁଛି ! ଭାରି ଭାରି ଲାଗୁଛି ହୃଦୟ, ମନପକ୍ଷୀ ଡେଣାରେ ଯେମିତି ଅଜ୍ଞାତ ବ୍ୟାଧର ଗୁଳି ଗଳିଛି ! ସଂଦିଗ୍ଧ ଆଶଙ୍କାରେ ସିଏ ରକ୍ତାକ୍ତ ହୋଇ ପଡ଼ିଛି !

ଗଛ ପାଖରେ କାମ ଚାଲିଛି ! ମଧ୍ୟାହ୍ନ ଭୋଜନ ପାଇଁ ଶ୍ରମିକମାନେ ଚାଲିଗଲେଣି ! ଗଛ ତଳେ ଠିଆ ହୋଇଥିବା ପରୀକ୍ଷିତ ଗଛ ଦେହକୁ ଲାଗି ଯାଇଛି ! ଗଛ ଗଣ୍ଡିରେ ତା' ଛାତି, ହାତ ଗଣ୍ଡି ଚାରିପଟ ବେଢ଼ାଇଛି ! ହଠାତ୍ ଦୁଇବୁନ୍ଦା ଜଳ ଉର୍ଦ୍ଧ୍ୱରୁ କେଉଁଠୁ ତା' କାନ୍ଧ ଉପରେ ଗଳି ପଡ଼ିଛି !

ମଣିଷପରି ଗଛ କାନ୍ଦୁଛି ?

ଠିକ୍ ସେଇଦିନ ବାହାରେ ଜହ୍ନ ସିମେଇ ପରି ଝିରି ଝିରି ହୋଇ ପଡ଼ିଥାଏ ! ରାତି ବାର ପାଖାପାଖି ! ପରୀକ୍ଷିତ ଶୋଇ ନଥାଏ ! ଅଳ୍ପ ଦୂରେ ଗାଡ଼ି ଖଣ୍ଡେ ଆସି ଠିଆ ହେବାର ଆବାଜ ଶୁଭିଲା ! ଠେକୁଆପରି ସିଏ କାନ ଟେକିଲା ! ରାତ୍ରୀର ନିସ୍ତବ୍ଧତା, ଦୁଇଟି ଲୋକଙ୍କ ଆଳାପରେ ଭାଙ୍ଗି ପଡୁଥାଏ ! ଶବ୍ଦର ଉଚ୍ଚାରଣ ସ୍ପଷ୍ଟ ଶୁଭୁଥାଏ ! "ଠିକ୍ ଅଛି !...ବୀଣା, ବୀଣା କୋଉ ତମ୍ବୁରେ ଶୋଉଚି, ଡାକ ତାକୁ !'

'କୋଉ ବୀଣା, ଆଜ୍ଞା ?'

'ଆବେ ସେ ଫ୍ରକ୍ ପିନ୍ଧା ମୂଲିଆଣି ଟୋକୀ, ଯାହାକୁ ଗତ ରବିବାରଠୁ ମୁଁ କାମ କରିବାକୁ କହିଛି !

'ସିଏ ଆଉ କାମ କରୁନି ! ଛୁଆଟା, ରେଜାଙ୍କ ପୂରା ମୂଲ ମାଗିଲା, ମନା କଲେ ପରୀକ୍ଷିତ ବାବୁ ?'

'ମାନେ ? ସିଏ କ'ଣ ତାଙ୍କ ଘରୁ ଦଉଥେଲା ? ଆବେ, ଗଛ କାହିଁକି କଟା ଗଲା ନାହିଁ ?'

'ମନା କଲେ ପରୀକ୍ଷିତ ବାବୁ !'

'ଡାକ୍‌ବେ ଶଳା ସେ ଇଂଜିନିୟରକୁ !' ସ୍ୱର୍ଗତ କଣ୍ଟ୍ରାକ୍ଟରଙ୍କ ପୁଅ, ଯୁବ କଣ୍ଟ୍ରାକ୍ଟର ଟୁକୁ ବାବୁ ! ବୋଧେ ମାଲ୍ ପିଇ ଆସିଛନ୍ତି ! ତା' ନହେଲେ ତାଙ୍କ ପାଟିରୁ ଏପରି ଭାଷା ?

ମଣିଷର ରୂପ ଦୁଇଟା !

'ମୋର ଏବେ ବୀଣା ଲେଖା ଗୋଟାଏ ପିଓର ଦେଶୀ ଚିକେନ୍ ଦରକାର ! କଇଁଥ



Source: Author, Digitized by PPRACHIN, SOA

ଲେଖା ଛାଡି... ତା’ ନ ହେଲେ କାଲିଠୁ ତୋର ବି ଛୁଟି ! ହଁ ଶୁଣ୍, ସେ ଇଂଜିନିୟରଟାର ହିସାବ କାଲି ତୁଟେଇ ଦେ’ ! ମୁଁ ଗୋଟାଏ ନୂଆ ଟୋକା ରଖିବି ! ଯିଏ ଏ ସବୁ କାମକୁ ଫିଟ୍ !

‘ଆଜ୍ଞା !’

‘ଆଜ୍ଞା କ’ଣ ବେ ? ଯା’ ଶଳା ଗୋଟାଏ ଚିକ୍‌କଣ ଜିନିଷ ଆଣବେ !’

ଗୁମାସ୍ତା ଓ ଟୁକୁବାବୁଙ୍କ କଥା ଶୁଣି ଘୂରି ଯାଉଥିଲା ତା’ ମଥା !

ମୁଡଁ ମାଡ଼ି ଖଟିଆ ଉପରେ ନିର୍ଜୀବଭଳି ସିଏ ପଡ଼ି ରହିଲା ! କେତେବେଳେ ଦୁଇଟି ପାପୁଲିପରି ନିଦ୍ରାର ଅତିଥି ଚିପି ଧରିଲେ ତା’ ଚକ୍ଷୁ ପତା !

‘ପରୀକ୍ଷିତ, ତମେ ଡରୁଚ, କାଲି ସକାଳକୁ ତମ ଚାକିରୀ ନଥିବ ! ନା, ନା, ଏହା କଦାପି ସମ୍ଭବ ନୁହେଁ ! ଏହାତ ନୁହେଁ ତମ ଭାଗ୍ୟ ଲେଖା !’

ସ୍ୱପ୍ନରେ ପୁଣି ସେଇ ଆକ୍ସିଡେଣ୍ଟ ଗଛ ! ମଣିଷପରି କହୁଛି: ସେଦିନ ମୁଁ ବୁଢ଼ା, ରୋଗଣା ଓ ବାତ ପୀଡ଼ିତ ଥିଲି ! ତେଣୁ ତତେ ମୁଁ ରକ୍ଷା କରି ପାରି ନଥିଲି, ମା’ ପୂର୍ଣ୍ଣିମା ! ଆଜି ମୋ ବାହୁରେ ଧୃତରାଷ୍ଟ୍ରର ବଳ ! ଲୌହ ଭୀମକୁ ପେଶି ମୁଁ ଅଟା କରି ଦେବି ! ତୁ ଡରନା’ ଝିଅ !

ବାପ ଝିଅର ପଥର ବାଡ଼ ! ସେ ବାଡ଼କୁ କେହି ଭାଙ୍ଗିଲେ ଯାଇ ଝିଅର ରୂପର କାଚଥାଳିରେ ପକାଇବ ଦୃଷ୍ଟିର ଧୂଳି ! ପୂର୍ଣ୍ଣିମା, ମା’ ମୋର, ମୁଁ ତୋ ପାଖେ ପାଖେ ଅଛି ! ତୁ ଡରନା !

‘ପୂର୍ଣ୍ଣିମା ? ପୂର୍ଣ୍ଣିମା କିଏ, ଆକ୍ସିଡେଣ୍ଟ ଗଛ’ ? ସ୍ୱପ୍ନରେ ପଚାରିଛି ପରୀକ୍ଷିତ !

‘ଓଃ, ଭୁଲ୍ ହୋଇଗଲା, ପରୀକ୍ଷିତ ! ପୂର୍ଣ୍ଣିମା ମୋ ଝିଅ ! ହୁକୁମ ଦେଉଥିବା ସେ ଭଣ୍ଡ କାଳେସୀକୁ ମୁଁ ଭେଟିଲିଣି ! ତୁମେ ଜାଣି ଖୁସି ହେବ, ମୁଁ ତା’ ଭଣ୍ଡାମୀର ଜାଲ ଆଜି ଛିଣ୍ଡେଇ ଦେଲି’ !

‘ମାନେ ?’

‘ସେଇ ଭଣ୍ଡଟା ତୁମ କଣ୍ଟ୍ରାକ୍ଟର ଟୋକା ! ଆଜି ତା’ ତଣ୍ଟିଟା ମୁଁ ମୋଡ଼ିଛି ! ହାଃ, ହାଃ, ହାଃ.... ପୁଣି ଅଟ୍ଟହାସ୍ୟ କରି ଉଠିଲା ଗଛଟା ! ପରୀକ୍ଷିତର ପତା ଗଲା ଫିଟି ! ଭୟରେ


Source: Author, Digitized by PPRACHIN, SOA

ଟଳ ଟଳ ହେଲା ତା' ଛାତି !

ଏକ ଅଜ୍ଞାତ କୋଳାହଳରେ ତା' ନିଦ୍ରା ଗଲା ହଜି ! ଭୋର ହୋଇ ଯାଇଥାଏ ! ସେ ବାହାରକୁ ଆସିଲା, ଦେଖିଲା ସବୁ ମୂଲିଆ ମୂଲିଆଣି ସେଇ ଆକ୍ସିଡେଣ୍ଟ ଗଛ ଆଡ଼କୁ ଛୁଟିଛନ୍ତି ! ପୁଣି କ'ଣ ଗୋଟାଏ ଘଟିଛି ? କ'ଣ ହୋଇଛି ? କ'ଣ ?

'ଟୁକୁ ବାବୁ କାଲି କେତେ ରାତିରେ ଆସିଥିଲେ କେଜାଣି ତାଙ୍କ ଜିପ୍‌ଟା ଗଛରେ ବାଡ଼େଇ ହୋଇଯାଇଛି !' କେହି ଜଣେ କହିଲା ! ପରୀକ୍ଷିତ ଏକ ମୁହଁ ହୋଇ ଗଛ ପାଖକୁ ଧାଇଁଲା ! ଗତ ରାତ୍ରୀରେ ଟୁକୁ ବାବୁ ଓ ଗୁମାସ୍ତାଙ୍କ କଥା ବାର୍ତ୍ତା ମନେ ପକାଇଲା ! ଆଜି ତା' ଚାକିରୀର ଶେଷ ଦିନ ? ଗୁମାସ୍ତା ମୋ ଦରମା ପତ୍ର ବୁଝାଇ ଦେବ ! ହଠାତ୍ ଶିଥିଳ ହୋଇଗଲା ତା' ଦୌଡ଼ିବା ! ଦୁଃଖରେ ବଦଳି ଗଲା ମୁହଁର ଆକୃତି !

ଟୁକୁବାବୁଙ୍କ ପୋଷ୍ଟମର୍ଟମ ଓ ଶବ ସଂସ୍କାର ସରିଲା ! ହଠାତ୍ ଅଭାବିତ ଘଟଣାଟିଏ ଘଟିଲା ! ଦୁଇଦିନ ପରେ କଂଟ୍ରାକ୍ଟରଙ୍କ ବିଧବା ବୃଦ୍ଧାମାତା ପରୀକ୍ଷିତକୁ ଡକାଇଲେ ! ଖୁବ୍ ରହି ରହି କାନ୍ଦିଲେ ! ତା' ପରେ କହିଲେ, 'ପୁଅ, ମୋର ଆଉ ଗୋଟିଏ ବୋଲି ଝିଅ ! ଏଇ ଦକ୍ଷିଣା !' ଦକ୍ଷିଣା ଠିଆ ହୋଇଥାଏ ବୋଉ ପାଖକୁ ଲାଗି ସୋଫା କରରେ !

'ମୋ ଇଶାଣରେ ଜଳୁଥିବା ଏକ ମାତ୍ର ଦୀପ ! ଏହାକୁ ମୁଁ ତମ ହାତକୁ ଟେକି ଦେଉଛି। ଏ ଘର ଦ୍ୱାର, ଟଙ୍କା ପଇସା, ବିଜ୍‌ନେସ ସବୁ ମୁଁ ତମ ଦୁହିଁଙ୍କୁ ଉଇଲ୍ କରି ଦେଇଛି ! ମୁଁ ଚାଲିଲି ଶ୍ରୀକ୍ଷେତ୍ର ! ଶ୍ରୀ ଜଗନ୍ନାଥଙ୍କ ମୁହଁକୁ ଅନାଇ ଅନାଇ ବୁଜିବି ମୋ ନେତ୍ର ! ମୋର କିଛି ଆଉ ଦରକାର ନାହିଁ, ପୁଅ! ଜଣେ ଲୋକ ଚଳିବା ପାଇଁ ଯଥେଷ୍ଟ ସମ୍ପତ୍ତି ମୋ ସ୍ୱାମୀ ସେଠି ରଖି ଯାଇଛନ୍ତି !

ନିଷ୍କମ୍ପ ସ୍ୱର ଓ ଦୃଷ୍ଟି ବୁଢ଼ୀଙ୍କର ! ଗୋଟିଏ ନିଶ୍ୱାସରେ ସେ କହିଲେ ଏତିକି ! ଦକ୍ଷିଣାର ପାପୁଲି ନେଇ ଧରାଇ ଦେଲେ ପରୀକ୍ଷିତକୁ ! 'ମା', ଆଉ ମୋ କଥା' ? ହଠାତ୍ ମଝିରେ ପ୍ରବେଶ କରି କହିଲା ଗୁମାସ୍ତା !

'ଗୁମାସ୍ତା' ! ତୁମ କଥା ବି ବୁଝିଛି ! ଗାଁର ସବୁଜମି, ଘର, ପୋଖରୀ ଓ ଆମ୍ବତୋଟା ତୁମର ! ମୁଁ ଏବେ ଆସୁଛି; ମୋ ଅନୁରୋଧ ରଖିବ ! ନିଜ ଝିଅ ଓ ଜାମାତା ଆଡ଼କୁ ଅନାଇ କହିଲେ, ଦୁହେଁ ଭୋ ଭୋ କାଂଦି ନଇଁ ପଡ଼ିଲେ ବୃଦ୍ଧାଙ୍କ ଚରଣତଳେ !



Source: Author, Digitized by PPRACHIN, SOA

ବାଃ, ଏ ଭେରିଭେରି ବିୟୁଟିଫୁଲ ହିନ୍ଦୀ ଫିଲ୍ମ ! ଚିତ୍କାର କରି ଉଠିଲା ପି' ! ଖୁସିରେ ପିନ୍ଧିଥିବା ସାର୍ଟ କଲରକୁ ଟେକି ଝାଡ଼ିଦେଲା ! ନାଟ୍ୟକାର ମିଃ. ହେନ୍‌ରି ଘିଅନ୍, ତୁମେ ତୁମ ତରଫରୁ କହିଚ ମତେ, ମଣିଷ ଜନ୍ମ ନେଇ ନାହିଁ ଫର୍ ହାପିନେସ୍ ! ମ୍ୟାନ୍ ଅଲଓ୍ୱେଜ୍ ବିୟର୍ସ ପନିଶ୍‌ମେଣ୍ଟ ! ଆର୍ଥର ରେନ୍‌ସମ୍ ଲେଖିଛନ୍ତି ନାଟକ : 'ଏ ଓ୍ୱମ୍ୟାନ୍ ଅଫ୍ ନୋ ଇଂପୋର୍ଟାନ୍ସ !'

....ଚଦର ତଳେ ସନ୍ଥ କବୀର ! ମୃତ ସୁଫୀ ସନ୍ଥଙ୍କ ଦେହ ଉପରେ ଢଙ୍କା ଯାଇଥାଏ ଚଦର, ତାଙ୍କୁ କିଏ କରିବ ସଂସ୍କାର, ହିନ୍ଦୁ ନା ମୁସଲମାନ, ଚାଲିଥାଏ ବିବାଦ !

ସବୁ କୋଳାହଳ ହୋଇଗଲା ସ୍ଥିର; ଚଦରଟାକୁ ଟେକି ନେଇ ଯେତେବେଳେ ପବନ ହଠାତ୍ ଫୋପାଡ଼ି ଦେଲା ଦୂରକୁ !

କାହାନ୍ତି କବୀର ? ଚଦର ତ୍‌ଳେ ଥିଲା ଗଦାଏ ପୁଷ୍ପ ଗୋଟିଏ ଦେହପରି ସଜ୍ଜିତ ! ଓଃ ତା'ର କି ମହକ !

ପି' ଏ ମ୍ୟାନ୍ ଅଫ୍ ନୋ ଇଂପୋର୍ଟାନ୍ସ ! ଗୋଟିଏ ଖତମ୍ ରଫ୍ ଖାତା ! ପରିତ୍ୟକ୍ତ ଫର୍ଦ୍ଦମୁଠା ! ତାକୁ ଝରକା ବାହାରକୁ ଫିଙ୍ଗି ଦେଉଛି ଏସ୍‌ଥେଟିକ୍ ସଚେତନ ହାତଟା !

ତଳେ ଖେଳୁଥିବା ପଂଝାଏ ଛୁଆ ହୋଇଯାଉଛନ୍ତି ଖୁସି !

ଆଃ, କି ସୁନ୍ଦର ଗ୍ରୀଟିଂଗସ୍, ପବନରେ ଗୁଡ଼ିପରି ଉଡ଼ି ଉଡ଼ି ତଳକୁ ଖସୁଛି !! ଆକାଶରେ ରେଖାକାଟି ରକେଟ୍‌ଟାଏ ଦୌଡ଼ୁଥାଏ ! କ'ଣ ତା' ନାଁ ? ଭି.ଟୁ. ବୋଧ ହୁଏ !

ହଠାତ୍ କାହିଁକି କେଜାଣି, ବଖରା ଭିତରର ସବୁ କଂପ୍ୟୁଟର ଦପ୍‌କିନା ଠିକ୍ ସେତିକିବେଳେ ଡେଡ୍ ହୋଇଗଲା !

□□□



Source: Author, Digitized by PPRACHIN, SOA

ଧନ୍ୟବାଦ :

ଅଙ୍କିତା ଗ୍ରାଫିକ୍ସ
ସରସ୍ୱତୀ
ଏବଂ
କାବ୍ୟଲୋକ
ଙ୍କୁ

Source: Author, Digitized by PPRACHIN, SOA



## ନକୁଳ ଚନ୍ଦ୍ର ସାହୁ

**ସମୟ ଭୁଲ କରୁଚି ବ୍ୟାକରଣ:**

ଅଭିବ୍ୟକ୍ତିବାଦ ଓ ପ୍ରଭାବବାଦ ସହିତ ଚେତନାପ୍ରବାହ ଶୈଳୀର ସମନ୍ୱୟରେ ନିର୍ମିତ ଶାବ୍ଦିକ ସ୍ଥାପତ୍ୟ । ସମକାଳୀନ ସମୟର ସମୀକ୍ଷାତ୍ମକ ଉଚ୍ଚକୋଟିର ଆର୍ଟ,ଏହାର ପ୍ଲଟ୍ । ଚରିତ୍ର ଅପେକ୍ଷା ଏଥିରେ ପ୍ରାଧାନ୍ୟ ଲାଭ କରିଛି ଇନ୍ଦ୍ରିୟଗ୍ରାହ୍ୟ ଚିତ୍ର ।
ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଆଦୌ ପୂର୍ଣ୍ଣଚ୍ଛେଦ ନାହିଁ, କେବଳ ବିସ୍ମୟବାଚୀ ଓ ପ୍ରଶ୍ନବାଚୀରେ ତିଆରି ହୋଇଛି ସବୁତକ ବାକ୍ୟ । ପ୍ରତିବାକ୍ୟରେ ହ୍ୟୁମୋର୍,ଫ୍ୟାସନ୍ ଓ ଟେକ୍ନିକ୍ , ଏହା ଖଣ୍ଡିଏ ପୋଷ୍ଟ-ମଡର୍ଣ୍ଣ କ୍ଲାସିକ୍ ।
ନୂଆରୁଚି ଓ ନୂଆଦୃଷ୍ଟି ତିନୋଟିଯାକ ଉପନ୍ୟାସରେ ଏକାଠି ଗୁନ୍ଥାଯାଇଛି । ଏଥିରେ ଜୀବନକୁ ଭେଟିହେବ, ନିଜ ସମୟର ସଂସାରକୁ ଦେଖିହେବ ଏବଂ ବଂଚିବା କଳା କୌଶଳ କିଛିମଧ୍ୟ ଶିଖିହେବ !

-ପ୍ରକାଶକ

Source: Author, Digitized by PPRACHIN, SOA